# ଆମେରିକାର ଘର ଓ ଘରଣୀ

( ପାଶ୍ଚାତ୍ୟ ଭ୍ରମଣ କାହାଣୀ )

ଲେଖିକା

**ଶ୍ରୀମତୀ କୁମୁଦିନୀ ମହାପାତ୍ର**

ଦୋଳମୁଣ୍ଡାଇ, କଟକ

ବହିଟିର ମୁଖବନ୍ଧ ଲେଖିଛନ୍ତି

[ ଆମେରିକାର ବିଶିଷ୍ଟ ମହିଳା ଓ ନାରୀନେତ୍ରୀ

**ଶ୍ରୀମତୀ ଗ୍ରେସ୍ ଲୁଡ଼ର** ]

ପ୍ରକାଶକ

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର

**ବିନୋଦ ବିହାରୀ, କଟକ—୨**

# ମୁଖବନ୍ଧ

ଲେଖକ ଭାବରେ ଗୌରବ ଅର୍ଜନ କରିବାର ଆକାଙ୍କ୍ଷା ନ ଥିଲେହେଁ ଜୀବନର ଏକ ଅପୂର୍ବ ଅନୁଭୂତିକୁ ଲିପିବଦ୍ଧ କରିବାର ପ୍ରବଳ ବାସନା ମୋତେ ଟାଣିଆଣିଛି, ଏହି ଲେଖା ଜଗତ୍‌କୁ, ଫଳରେ ରୂପ ପାଇଛି ଏହି ପୁସ୍ତକଟି, "ଆମେରିକାର ଘର ଓ ଘରଣୀ ।" ପାଶ୍ଚାତ୍ୟ ଦେଶ ଭ୍ରମଣର ଅପୂର୍ବ ସୌଭାଗ୍ୟ ମୋତେ ମିଳିଥିଲା ଆଜକୁ ପ୍ରାୟ ଛ ବର୍ଷ ତଳେ । ଆମେରିକାରେ ଦୁଇବର୍ଷରୁ କିଛି ଅଧିକ କାଳ ଅବସ୍ଥାନ କରିବା ଭିତରେ ମାର୍କିନ ମହିଳା-ମାନଙ୍କର ଯେଉଁ କେତୋଟି ଗୁଣ ମୋତେ ମୁଗ୍‌ଧ କରିଥିଲା, ଭାବିଥିଲି, ସେଗୁଡ଼ିକୁ ଲିପିବଦ୍ଧ କରି ଆମ ଦେଶର ମା, ଭଉଣୀ-ମାନଙ୍କ ଆଗରେ ବାଢ଼ିବି । ସେମାନଙ୍କର ଭଲ ଗୁଣ ଗୁଡ଼ିକରୁ ଆମର କେତେ କଥା ଶିଖିବାର ଅଛି । ସେମାନଙ୍କ ଘରକରଣା ସେମାନଙ୍କ ଘର ସାଜସଜ୍ଜା, ବିନା ଚାକର ଚାକରାଣୀରେ ଘର ଚଳାଇବା, ଘରର ଯାବତୀୟ ଜଞ୍ଜାଳ ଭିତରେ ନିଜେ ଓ ନିଜ ପରିବାର ବର୍ଗକୁ ନେଇ ନାନା ଉପଭୋଗ କରିବା ମାର୍କିନ ମହିଳାମାନଙ୍କର ଏକ ସ୍ୱଭାବଗତ ଗୁଣ । ଏହି ଗୁଣଟି ମୋତେ କାହିଁକି ଯେ କୌଣସି ଲୋକକୁ ମୁଗ୍‌ଧ କରିବ ।

ଆମେରିକାରେ ଥିଲାବେଳେ ଆମେରିକାର ଘର ଓ ଘରଣୀ ଶୀର୍ଷରେ ମୁଁ ଆମେରିକାର ନାରୀମାନଙ୍କର ଘରକରଣା ସମ୍ବନ୍ଧରେ

କେତେଗୁଡ଼ିଏ ପ୍ରବନ୍ଧ ଓଡ଼ିଶାର ସୁବିଖ୍ୟାତ ଦୈନିକ ପତ୍ରିକା 'ସମାଜ'ରେ ପ୍ରକାଶ କରୁଥିଲି । ସେହିସବୁ ପ୍ରବନ୍ଧ ପଢ଼ି ଆମ ଦେଶର ମା, ଭଉଣୀମାନେ ଆମେରିକା ସମ୍ବନ୍ଧରେ ଆହୁରି କେତେ କଥା ଜାଣିବାକୁ ଇଚ୍ଛା କରୁଥିଲେ । ତେଣୁ ସେମାନଙ୍କର ସେହି କୌତୁହଳତାକୁ ମେଣ୍ଟାଇବା ପାଇଁ ମୋ ଭ୍ରମଣ କାହାଣୀଟିକୁ ପୂର୍ଣ୍ଣାଙ୍ଗ କରି ପ୍ରକାଶ କଲି । ଅବଶ୍ୟ ଏହି ପ୍ରକାଶନରେ ମୋର ସ୍ୱାମୀ ଡ଼କ୍ଟର ଗୋକୁଳାନନ୍ଦ ମହାପାତ୍ରଙ୍କ ପ୍ରଚେଷ୍ଟା ଅପରିସୀମ । ମୋର ଲେଖାଗୁଡ଼ିକୁ ସଂଶୋଧନ କରିବା, ପରିଚ୍ଛେଦର ନାମକରଣ କରିବାଠାରୁ ଆରମ୍ଭ କରି ଏହି ଭ୍ରମଣ କାହାଣୀରେ କି କି ପ୍ରକାର ଛବି ରହିବ, ସେସବୁ ତାଙ୍କର ନିର୍ଦ୍ଦେଶରେ ହୋଇଛି । ପାଣ୍ଡୁଲିପି ଲେଖିବାରେ ମୋର ସାନଭଉଣୀ ସରୋଜିନୀ ରାୟ (ବର୍ତ୍ତମାନ ସରୋଜିନୀ ପଟ୍ଟନାୟକ) ଓ ମୋ ବଡ଼ଝିଅ ଜ୍ୟୋତ୍ସ୍ନାର ସାହାଯ୍ୟ ଅବିସ୍ମରଣୀୟ ।

ସର୍ବୋପରି ଆମେରିକାରେ ଥିଲାବେଳେ ଆମ ପରିବାରର ବିଶିଷ୍ଟ ବନ୍ଧୁ ତଥା ଶୁଭାକାଙ୍କ୍ଷୀ ଶ୍ରୀମତୀ ଗ୍ରେସ୍ ଲୁଡ଼ର ଏହି ପୁସ୍ତକଟିର ମୁଖବନ୍ଧ ଲେଖିଥିବାରୁ ମୁଁ ତାଙ୍କୁ ମୋ ଗଭୀରତମ ଅନ୍ତରରୁ ଧନ୍ୟବାଦ୍ ନ ଦେଇ ରହି ପାରୁନି । ଶ୍ରୀମତୀ ଲୁଡ଼୍‌ର ଆମେରିକାର ଜଣେ ଆଦର୍ଶ ଓ ବିଶିଷ୍ଟ ମହିଳା । ସେ ଆମେରିକାର ବୋଷ୍ଟନ ସ୍ଥିତ ନର୍ଥ ଇଷ୍ଟର୍ଣ୍ଣ ବିଶ୍ୱବିଦ୍ୟାଳୟର ରସାୟନ ଅଧ୍ୟାପକ ଶ୍ରୀଯୁକ୍ତ ଏଫ. ଲୁଡ଼ରଙ୍କ ଖାଲି ପତ୍ନୀ ନୁହନ୍ତି, ଆମେରିକାର ଏକ ନାରୀନେତ୍ରୀ ଭାବରେ ପ୍ରସିଦ୍ଧ । ମୋର ଲେଖାଗୁଡ଼ିକ ଯେତେବେଳେ ସମାଜରେ ପ୍ରକାଶ ପାଉଥିଲା ଓ ସମାଜ କର୍ତ୍ତୃପକ୍ଷଙ୍କ ଦୟାରୁ ସେଗୁଡ଼ିକ ଆମେରିକାରେ ଆମଠାକୁ ପଠା ହେଉଥିଲା, ମିସେସ୍

ଲୁଡ଼୍‌ର ସେଗୁଡ଼ିକୁ ଆମ ଘରେ ଦେଖିବାକୁ ବହୁବାର ସୁଯୋଗ ପାଇଥିଲେ । ଯଦିଓ ସେ ସେଗୁଡ଼ିକ ପଢ଼ି ପାରୁ ନ ଥିଲେ, ତେବେ ସେଥିରେ କ କ ବିଷୟରେ ଲେଖାହୋଇଛି ମୋ ପାଖରୁ ଠିକ୍‌ଭାବି କରି ବୁଝୁଥିଲେ । ଏଭଳି ଗୁଡ଼ିଏ ଲେଖାକୁ ଏକତ୍ରିତ କରି ପୁସ୍ତକାକାରରେ ପ୍ରକାଶ କଲେ, ମାର୍କିନ୍ ନାରୀଙ୍କ ସମ୍ବନ୍ଧରେ ଆମ ଦେଶର ଲୋକେ ବେଶ୍ ଧାରଣା କରିପାରିବେ ବୋଲି ସେ ସବୁବେଳେ କହୁଥିଲେ । ସେଥି ସହିତ ଆହୁରି ମଧ୍ୟ କହିଥିଲେ, ଯଦି ମୁଁ ଏମିତି ଏକ ବହି ଲେଖେ, ତେବେ ସେ ବହିର ମୁଖବନ୍ଧ ଲେଖିବାକୁ ସେ ଭଲ ପାଇବେ । ଯା ହେଉ ମିସେସ ଲୁଡ଼ରଙ୍କ ସେହି କାମନା ଆଜି ଚରିତାର୍ଥ ହୋଇଛି ଓ ସେ ତାର ମୁଖବନ୍ଧ ଲେଖିଥିବାରୁ ମୁଁ ଏତେ ଖୁସି ଯେ ଭାଷାରେ ପ୍ରକାଶ କରିବାକୁ ଅକ୍ଷମ । ଏହି ମୁଖବନ୍ଧ ପାଇଁ ମିସେସ୍ ଲୁଡ଼ରଙ୍କୁ କେମିତି ଧନ୍ୟବାଦ୍ ଦେବି ଭାବିପାରୁ ନା । ପରିଶେଷରେ ମୋର ସମାଜରେ ପ୍ରକାଶିତ ଲେଖାଗୁଡ଼ିକୁ ଏଠାରେ ପ୍ରକାଶ କରିଥିବାରୁ ସମାଜର କର୍ତ୍ତୃପକ୍ଷଙ୍କୁ ଧନ୍ୟବାଦ୍ ନ ଦେଇ ରହିପାରୁ ନା । ଲେଖାରେ ବହୁ ତ୍ରୁଟି ରହିଥାଇପାରେ, ଓଡ଼ିଶାର ସୁଧୀବର୍ଗ ସେଥିପାଇଁ କ୍ଷମା ଦେବେ ବୋଲି ଆଶା ।

ବହିଟି ଓଡ଼ିଶାର ମା, ଭଉଣୀମାନଙ୍କଠାରେ ଆଦୃତ ହେଉ ଏହାହିଁ ମାତ୍ର କାମନା ।

ଦୋଳମୁଣ୍ଡାଇ, କଟକ
ତା୧୦ । ୯ । ୬୭ } **ଶ୍ରୀମତୀ କୁମୁଦିନୀ ମହାପାତ୍ର**

---*---

## FOREWORD

It gives me a great pleasure to write the foreword of the book. "**American women**" written by Mrs Kumudini Mahapatra of India. American women have noble guide lines in the lives of our great women, past and present. Frances E. Willard, Peerless educator, orator. and reformer inspired people to belief in the single standard of purity and equality for men and women, with their heridity free of the taint of poisons and the propaganda that generates them. Jane Addams, social and civil leader who struggled against the inhumanity and political deterioration of a great city beating her heart out against it, established a conducted and settlement oasis for help to those caught in its toils.

We now must labour against disunity, ignorance, the impact of questionably acquaired wealth, corporate power, which steals and corrupts and unless we succeed, as well as you in India, we shall see uudermined, what was hoped through our best lives would lead on to alabaster cities.

Decay from false propaganda, we see in the loss of the 18th Amendment, the, only one ever taken out of the constitution. We now have to struggle against corporation-empire power and dishonest administration from the centres of government.

Our great women, past and present, show luminously in the life of Annalee Stewart, methodist minister and peace leader, a total programme based on the life and teachings of Jesus. This means an end to war, brutal advertising, poverty.

To the Mahapatras r away, whose lives spea these ethical purpo--or t- sqanity, I wish to express my - 1- -ppreciations,

Mrs. Kumudini Mahapata author of the book while residing in the United States for little more than two years and fulfilling her home duties in unfamiliar surroundings succeeded in learning many things regarding American women. I loved to visit in her home. which she made a place of hospitality and friendliness and I now miss it greatly.

She was interested in all that affects life. She eagerly opened her mind to new knowledge and her hands to the practice it revealed. She gave attention to the arts of nutrition and family care.

My best impression of India has been gained from her friendship and I think of India as a country striving for better and higher living.

With her radiant personality she possessed integrity and love and keen sense of humour, all of which make life worth living.

Wife of a distinguished gentelman and scholar, this dignified and beautiful woman has added a dimension in aspiration aad hope to my own life.

112, Wether bee Road.
Waltham, Massachusetts, U. S. A.
the April 6th. 1967

**Mrs. Grace Luder**

# ସୂଚୀପତ୍ର



—*—

## ପ୍ରଥମ ଅଧ୍ୟାୟ

# ଭାରତରୁ ବିଦାୟ

ରାତି ଠିକ୍ ବାରଟା । କୃଷ୍ଣ ପକ୍ଷର ଘନ ଅନ୍ଧକାର କଲିକତାର ଦମ୍ ଦମ୍ ଉଡ଼ାଜାହାଜ ଘାଟିକୁ ପୁରାପୁରି ଘୋଡ଼ାଇ ରଖିଥାଏ । ପାସପୋର୍ଟ ଓ ମାଲ୍ ଟିକଟ ପତ୍ର ଆଦି ଚେକ୍ ସରିବା ପରେ ଆମେ ଜିନିଷପତ୍ର ଗୁଡ଼ିକୁ ଉଡ଼ାଜାହାଜ କମ୍ପାନି ମାର୍-ଫତରେ ଦେଇ ଦମ୍‌ଦମ୍ ଉଡାଜାହାଜ ଅଫିସର ଉଡ଼ାଜାହାଜ ପଡ଼ିଆ ଆଡ଼କୁ ଥିବା ଲାଉଞ୍ଜରେ ବିଶ୍ରାମ ନେଲୁ । ଡାକ୍ତର ମହାପାତ୍ର, ପୁଅ ବାବୁଲି, ଝିଅ ଟୁନୁ ଆଉ ମୁଁ ଆମେ ଏଇ ଚାରିଜଣ । ପାନ ଆମେରିକାନ କମ୍ପାନିର ବିରାଟ ଜେଟ୍ ଜାହାଜ ବୋଇଙ୍ଗ-୭୦୭ ଜେଟ୍‌ରେ ଆମର ଦମ୍‌ଦମ୍ ଛାଡ଼ିବା କଥା ଠିକ୍ ରାତି ବାରଟାବେଳେ । ସିଙ୍ଗାପୁରରୁ ବିରାଟ ଜେଟ୍ ଜାହାଜ ଆସି ଦମ୍‌ଦମ୍ ଉଡ଼ାଜାହାଜ ଘାଟିରେ ଓହ୍ଲାଇସାରିଥାଏ । ଅଦୂରରେ ଆମ ଯାତ୍ରାପାଇଁ ଥିବା ବିରାଟ ଜାହାଜଟିକୁ ଦେଖି ମନ ଭିତରଟା ଭୟରେ କେମିତି କେମିତି ହୋଇ ଯାଉଥାଏ ।

ମାର୍କିନ ସ୍ତ୍ରୀଲୋକଟିଏ ଆସି ଆମଠାରେ ଠିଆ ହେଲା । ଉଡ଼ା-ଜାହାଜର ପରିଚାରିକା ସେ । ଏୟାର ହୋଷ୍ଟେସ୍ । ମାର୍କିନ ପୋଷାକ ଉପରେ ପାନ୍ ଆମେରିକାନ୍ କମ୍ପାନିର ଛାପ । ମୁହଁରେ

ଉଚ୍ଛୁଳାହମ । ଆମନ୍ତ୍ରଣ ଉଡ଼ାଜାହାଜ ଭିତରକୁ ଯିବାକୁ । ଆମକୁ ଉଡ଼ାଜାହାଜ ପର୍ଯ୍ୟନ୍ତ ନେବାପାଇଁ ଅପେକ୍ଷା କରୁଥାଏ ଗୋଟିଏ ମଟରଗାଡ଼ି । ଆମେ ତେର ଜଣ ମଟର ଗାଡ଼ିରେ ବସିଲୁଁ । ଉଡ଼ାଜାହାଜ ନିକଟରେ ପହଞ୍ଚି ଗାଡ଼ିରୁ ଓହ୍ଲାଇ ପାହାଚ ଦେଇ ବିରାଟ ଉଡ଼ାଜାହାଜ ଭିତରକୁ ଗଲୁଁ । ଭିତର କି ବିରାଟ ! ଉଡ଼ାଜାହାଜ ସମ୍ବନ୍ଧରେ ଆମର ଯା ଧାରଣା ଥିଲା, ତା'ଠାରୁ ଏ ଅଲଗା । ବାପରେ, କେଡ଼େ ବିରାଟ ଏ ଜାହାଜଟା । ଶହେରୁ ଅଧିକ ଲୋକ ଏଥିରେ ସୁରକ୍ଷିତରେ ବସି ଯାଇ ପାରିବେ । ଏୟାର ହୋଷ୍ଟେସ୍ ଆମକୁ ନେଇଯାଇ ଆମ ପାଇଁ ରିଜର୍ଭ ହୋଇଥିବା ସିଟ୍‌ରେ ବସାଇଦେଲେ । ଉଡ଼ାଜାହାଜ ଭିତରେ କି ଥଣ୍ଡା । ବାହାରେ ଜୁନ୍‌ମାସରେ ଯେଉଁ ଗରମ । ଏଠି ଗରମ ମୋଟେ ନାହିଁ । ତା' ଭିତରେ ହିମ ଥଣ୍ଡା, ଠିକ୍ ଶୀତଦିନ କି କଅଣ ? ଏୟାର କଣ୍ଡିସନିଂରେ ଏ କାରସାଦି । ନ ହେଲେ ଗରମ ଦିନକୁ ଶୀତଦିନରେ ପରିଣତ କରିବ ବା କିଏ ?

ଆମେ ଜାହାଜରେ ପଶିବାବେଳକୁ ବହୁତ ଗୁଡ଼ିଏ ଯାତ୍ରୀ ବସିଥାନ୍ତି । ସେମାନେ ସମସ୍ତେ ଜାପାନ, ହଂକଂ, ସିଙ୍ଗାପୁର ଆଦି ସ୍ଥାନରୁ ଆସିଥାନ୍ତି । ସେମାନଙ୍କ ଭିତରୁ କିଏ କେତେ ଆଗେଇ ଯିବେ । କଲିକତାରେ ଅଳ୍ପ କେଇ ଜଣ ଓହ୍ଲାଇଥାନ୍ତି । ଆମେ ଜାହାଜରେ ବସି ସାରିବା ପରେ ଉଡ଼ାଜାହାଜ ଛାଡ଼ିବା ପାଇଁ ସଙ୍କେତ ଦେଲା । ପ୍ରଥମ ସଙ୍କେତ ଯେଝା ଯେଝା ଦେହକୁ ସିଟ୍ ଦେହରେ ବାନ୍ଧ । ବଡ଼ ଅଡୁଆ କଥା, ଦେହକୁ କେମିତି ବାନ୍ଧିବା ? ଏୟାର ହୋଷ୍ଟେସ୍ ଆସି ଆମକୁ ଦେଖାଇ ଦେଇଗଲେ । ପୁଅ ଓ ଝିଅ ଦୁଇଜଣଙ୍କର ନିଜେ ବାନ୍ଧି ଦେଇଗଲେ । ଆମେ ଶିଖିନେଲୁ ଏମିତି ଦେହ ବାନ୍ଧିବା । ପ୍ରଥମଥର ଉଡ଼ାଜାହାଜ ଓହ୍ଲାଇଲାବେଳେ

ଓ ଉଠିବାବେଳେ ବେଲ୍ଟକୁ ଏମିତି ବାନ୍ଧିବାକୁ ପଡ଼ିବ । ତେଣୁ ଯେଉଁଠାକୁ ଏତେଥର କରିବାକୁ ପଡ଼ିବ, ସେଇଠାକୁ ଭଲ ଭାବ-ରେ ଶିଖି ନେଲେ ସୁବିଧା । କେତେଥର ଏୟାର ହୋଷ୍ଟେସ୍‌କୁ ଡାକିବୁଁ ସାହାଯ୍ୟ କରିବା ପାଇଁ । ସେମାନେ ଆମକୁ ଭାବିବେ ବା କଅଣ !

ଉଡ଼ାଜାହାଜ ଛାଡ଼ିବା ପୂର୍ବରୁ ଆମ ସିଟ୍ ଠିକ ସାମନା ସ୍କ୍ରିନରେ କେତେ କଣ ସାବଧାନ ବାଣୀ ଓ ସଙ୍କେତ ମନକୁ ମନ ଲେଖି ହୋଇ ଯାଉଥାଏ । ଦେଖିବାକୁ ଭାରି ମଜା ଲାଗୁଥାଏ ସେ ନୂଆ ଲୋକ । ବେଳକୁ ବେଳ ଶୀତର ମାତ୍ରା ଟିକିଏ ଟିକିଏ ବଢ଼ିଲା ଭଳି ଜଣା ପଡ଼ୁଥାଏ ।

ଏହି ସମୟରେ ଶେଷ ସଙ୍କେତ ଆସିଲା ଉଡ଼ାଜାହାଜ ଛାଡ଼ିବ । ଗୁମ୍ ଗୁମ୍ ଉଡ଼ାଜାହାଜ ଦୁଆର ବନ୍ଦ ହେଲା । କିଛିଟା ଦୋହଲି ଉଡ଼ାଜାହାଜ ଭୂମି ଉପରେ ଗଡ଼ି ଚାଲ ପରି ଲାଗିଲା । କିଛି ଅଲଗା ଲାଗୁ ନ ଥାଏ । ମଟରରେ ଗଲା ଭଳି ଲାଗୁଥାଏ । ଉଡ଼ାଜାହାଜ ଧାଇଁଲା ରନ୍‌ୱେରେ କିଛି ସମୟ ଗଡ଼ି ନେଇ ହଠାତ୍ ଭୂଇଁରୁ ଜାହାଜ ଉପରକୁ ଉଠିବାର ଉପକ୍ରମ କଲା । ଠିକ୍ ଯେମିତି ଦୀପାବଳୀ ବାଣର ରକେଟ୍ ଉପରକୁ ଉଠେ ସେଇ ଖଣ୍ଡରେ ସୂର୍ଯ୍ୟକନା ଉପରକୁ ଉଠୁଥାଏ । ଉଡ଼ାଜାହାଜ ମୁହଁଟି ଉପରକୁ ଓ ଲାଞ୍ଜଟା ତଳକୁ ତଳି ରହିବା ଭଳି ଅବସ୍ଥାରେ ଥାଏ । ଝରକା ଦେଇ ଦେଖିଲି କଲିକତା ନଗରୀର ଆଲୋକ ବତୀ ଗୁଡ଼ିକ ଏକ ଉଜ୍ଜ୍ୱଳ ତାରକା ଭଳି ତଳେ ବିସ୍ତୃତ ହୋଇ ରହିଛି । ଆମେ ମେଘ ଗାଳିଚା ଉପରେ ଭାସି ଭାସି ଉପରକୁ ଚାଲିଛୁ । କଳ୍ପନାର ଡେଣା ରାଇଜକୁ ଗଲାଭଳି । କି ସୁନ୍ଦର ଏ ଦୃଶ୍ୟ ! ସହଜରେ ଭୁଲି ହେବ ନା । ଜାହାଜ କିଛି ସମୟ ଉପରକୁ ଉଠିବା ପରେ ଆଉ ଅଧିକ ନ ଉଠି ସିଧା ହୋଇ

ଆଗକୁ ଗତି କଲି ପାକିସ୍ଥାନର କରାଚୀ ଉଡ଼ାଜାହାଜ ଘାଟି ଅଭିମୁଖେ । କଲିକତାରୁ ସିଧାସଳଖ କରାଚୀ । ବାଟରେ ଓହ୍ଲାଇବା କଥା ନାହିଁ । ତିନିଘଣ୍ଟା ପାଖାପାଖି ଲାଗିବ । ଆକାଶରେ କିଛି ସମୟ ଗତି କଲା ପରେ ଜଣେ ଏୟାର ହୋଷ୍ଟେସ୍ ଆସି ଆମକୁ ବତାଇ ଦେଲେ ଗୋଟିଏ କଥା । ଯଦି ଉଡ଼ାଜାହାଜ କୌଣସି କାରଣ ବଶତଃ ଖସିପଡ଼େ ତେବେ ଆମେ ସବୁ ପାରା-ଚ୍ୟୁଟ୍ ସାହାଯ୍ୟରେ ଉଡ଼ାଜାହାଜରୁ କେମିତି ଖସି ପଡ଼ି ଜୀବନ ରକ୍ଷା କରି ପାରିବୁ । ଏୟାର ହୋଷ୍ଟେସ୍‌ଙ୍କ ବର୍ଣ୍ଣନା ଅତି ସୁନ୍ଦର । ହେଲେ ଉଡ଼ାଜାହାଜ ଖସି ପଡ଼ିବ ଏ ଧାରଣା ମନରେ ଆସିବା କ୍ଷଣି ମୁଣ୍ଡ ଘୁରାଇ ଯାଉଥାଏ । ଦେହଭିତରେ ଏକ ପ୍ରକାର ଶିହରଣ ଖେଳି ଯାଉଥାଏ ।

ଉଡ଼ାଜାହାଜ କରାଚୀ ଉଡ଼ାଜାହାଜ ଘାଟିରେ ପହଞ୍ଚିଲା ବେଳକୁ ରାତି ତିନିଟା ହେବ ବୋଲି ଜଣାଇ ଦିଅନ୍ତେ, ଏତେ ସମୟ ଅପେକ୍ଷା କରିବ କିଏ, ଭାବୁ ଭାବୁ ଆଖି ମୁଦି ହୋଇ ଆସିଲା । ଉଡ଼ାଜାହାଜ ଭିତରେ ବେଶ୍ ଥଣ୍ଡା । ଖରାଦିନର ଗରମ କଥା ଆମେ କୁଆଡ଼େ ଭୁଲି ଗଲୁଣି । ସିଟ୍‌ଗୁଡ଼ିକ ବେଶ୍ ଆରାମ । ନିଦ ନ ଆସିବ ବା କେମିତି ? ପିଲାମାନଙ୍କୁ କାଳେ ଥଣ୍ଡା ଲାଗିବ, ଏୟାର ହୋଷ୍ଟେସ୍ ଆସି ସେମାନଙ୍କୁ କମ୍ବଳ ଗୋଟିଏ ଗୋଟିଏ ଘୋଡ଼ାଇ ଦେଇଗଲେ । ମୁଁ ମନେ ମନେ ଭାବୁଥାଏ, ବାଃରେ ଆମର ଏ ଅନୁଭୂତି । ଆମ ତଳେ ଥିବା ଭାରତର ଲୋକେ ଖରାଦିନରେ ଗରମରେ ସଢ଼ୁଥିବେ ଅଥଚ ଆମେ ଏଠି କମ୍ବଳ ଘୋଡ଼ି ହେଉଛୁଁ ।

ପୁଅଝିଅ ଦୁହେଁ କେତେବେଳୁ ନିଜ ନିଜ ସିଟରେ ଶୋଇ ପଡ଼ିଲେଣି । ମୋ ଆଖିକୁ ନିଦ ଆସୁଥାଏ, କିନ୍ତୁ ଆମେ ଉଡ଼ା-

ଜାହାଜରେ ଯାଉଁଛୁ, ଏକଥା ଭାବିଲା ବେଳକୁ ମନ ଭୟରେ ଶଙ୍କିତ ହୋଇ ପଡ଼ୁଥାଏ । ନିଦ କୁଆଡ଼େ ଚାଲି ଯାଉଥାଏ । ନିଦ ଓ ଭୟର ଏହି ଲୁଚକାଳି ଭିତରେ ମୋତେ କେତେବେଳେ ନିଦ ଲାଗିଗଲାଣି, ମୋର ଖିଆଲ ନାହିଁ ।

ହଠାତ୍ ମୋ ନିଦ ଭାଙ୍ଗିଗଲା । ଦେଖିଲି ଚାରିଆଡ଼ ଦିନ ଭଳି ଆଲୋକିତ । ମନେ ମନେ ଭାବିଲି ସକାଳ ହୋଇଗଲା ନା କଅଣ ? ଆଖି ମଳି ମଳି ଉଠିଲି । ଦେଖିଲି ଉଡ଼ାଜାହାଜର ଠିକ ଠିକ ଝରକା ଦେଇ ସକାଳ ସୂର୍ଯ୍ୟଙ୍କର ସୁନେଲି କିରଣ ଆମ ଉଡ଼ା-ଜାହାଜର ଭିତର କକ୍ଷକୁ ବେଶ୍ ଆଲୋକିତ କରି ଦେଇଛି । ଚାରି-ଆଡ଼କୁ ଅନାଇ ଲକ୍ଷ୍ୟ କଲି ଆମ ଚାରିପାଖରେ ବହୁ ପାଶ୍ଚାତ୍ୟ ଭଦ୍ରଲୋକ ଓ ଭଦ୍ରମହିଳା ଯେଝା ଯେଝା ସିଟ୍‌ରେ ବେଶ୍ ଆରାମରେ ନିଦ୍ରାଗତ । ଡକ୍ଟର ମହାପାତ୍ର ମୋ ଆଗରୁ ଉଠି ଗୋଟିଏ ମେଗାଜିନ ପଢ଼ିବାରେ ବ୍ୟସ୍ତ । ପଚାରି ବୁଝିଲି ଆମ ଉଡ଼ା-ଜାହାଜ କେତେବେଳୁ କରାଚୀ ଛାଡ଼ି ଲେବାନନ୍ ରାଜ୍ୟର ବେରୁଟ୍ ଉଡ଼ାଜାହାଜ ଘାଟି ଅଭିମୁଖେ ଧାଇଁ ଚାଲିଛି । ଆଉ ଅଳ୍ପ ସମୟ ପରେ ଏହା ବେରୁଟ୍ ଉଡ଼ାଜାହାଜ ଘାଟିରେ ଓହ୍ଲାଇବ ।

ପିଲାମାନଙ୍କୁ ଗୋଟିକ ପରେ ଗୋଟିଏ ଉଠାଇଲି । ସମସ୍ତଙ୍କୁ ଦାନ୍ତ ଘଷିବା ପାଇଁ ଗାଧୁଆ ଘରକୁ ପଠାଇଦେଇ ମୁଁ ମଧ୍ୟ ଦାନ୍ତ ଘଷିବାପାଇଁ ଉଠି ଗଲି । ବଡ଼ ଅଦ୍ଭୁତ । ଆମ ପରିବାର ଛଡ଼ା ଆଉ କେହି ଦାନ୍ତ ଘଷିବାର ନା ବ ଧରିଲେନି । ସକାଳର ଜଳଖିଆ ଉଡ଼ାଜାହାଜରେ ଦିଆଗଲାରୁ ସମସ୍ତେ ଦାନ୍ତ ନ ଘଷି ସେମିତି ଖାଇ ବସିଲେ ।

ଜଳଖିଆ ଖାଇବା ଆମେ ଶେଷ କରିଛୁ କି ନାହିଁ, ଆମ ଉଡ଼ା-ଜାହାଜ ବେରୁଟ୍‌ରେ ଓହ୍ଲାଇବାର ଉପକ୍ରମ କଲା । ବେରୁଟ୍‌ରେ ଏହା ରହିଲା ପ୍ରାୟ ଘଣ୍ଟାଏ । ଉଡ଼ାଜାହାଜ ଘାଟିଟି ଅତୀବ ସୁନ୍ଦର । ଅଦୂରରେ ନୀଳ ସାଗର, ପଶ୍ଚିମ ଚକ୍ରବାଳକୁ ଘେରି ରହିଲା ଭଳି ଦିଶୁଥାଏ । ଉତ୍ତର ମହାସାଗର ଛାଡ଼ିଦେଲେ ଏ ହେଲା ଇଉରୋପର ଦକ୍ଷିଣ ଭାଗରେ ଥିବା ଭୂମଧ୍ୟ ସାଗର । ଘାଟିର ଏଆଡ଼େ ସେଆଡ଼େ ବୁଲି ଉଡ଼ାଜାହାଜକୁ ଫେରି ଆସିଲୁଁ ।

କିଛି ସମୟ ରହିବା ପରେ, ପୁଣି ଆମ ଜାହାଜ ଛାଡ଼ିଲା ଏଥର ତୁର୍କିର ପ୍ରଧାନ ସହର ଇସ୍ତାନବୁଲ୍ ଅଭିମୁଖେ । ଇସ୍ତାନବୁଲ ପର୍ଯ୍ୟନ୍ତ ହେଲା ଆମ ଏସିଆ ମହାଦେଶ । ସେଠାରେ ଏସିଆ ଶେଷ ହୋଇ ଆରମ୍ଭ ହେବ ଇଉରୋପ । ବେରୁଟ୍‌ଠାରୁ ଇସ୍ତାନବୁଲ ୮୦୦ ମାଇଲ । ଇସ୍ତାନବୁଲରେ ଆମ ଜାହାଜ କିଛିକ୍ଷଣ ରହି ଛାଡ଼ିଲା ଅଷ୍ଟ୍ରିଆର ରାଜଧାନୀ ଭିଏନା ଅଭିମୁଖେ । ଇଉରୋପର ଏକ ପ୍ରସିଦ୍ଧ ତଥା ସୁନ୍ଦର ସହର ଭାବରେ ଭିଏନାର ପ୍ରସିଦ୍ଧି ଖୁବ୍ ବେଶି । ଏଠି ଉଡ଼ାଜାହାଜ ଘାଟିରେ ଆମେ ସର୍ବପ୍ରଥମେ ଦେଖିବାକୁ ପାଇଲୁଁ ଗତିଶୀଳ-ପାହାଚ । ବଡ଼ ଅଦ୍ଭୁତ ପାହାଚ ଏ । ଏଥିରେ ମଣିଷ ପାହାଚରେ ଚାଲିବା ପରିବର୍ତ୍ତେ ପାହାଚ ଗତି କରେ । ମଣିଷ ସ୍ଥିର ଭାବରେ ଠିଆହୋଇ ରହେ । ଏମିତି ଗତିଶୀଳ ପାହାଚ ଦେଖି ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଏଥିରେ କାଳେ ଗଲେ କିଛି କଅଣ ହେବ ଭାବି ମୁଁ ପିଲାମାନଙ୍କୁ ସେଥିରେ ଯିବା ପାଇଁ ମନା କଲି । ଉଡ଼ା-ଜାହାଜ ଘାଟିର ଆଧୁନିକତା ଦେଖି ଆମେ ସ୍ତବ୍ଧ ହୋଇ ପଡ଼ିଲୁଁ ।

ସେଠାରୁ ଆମ ଜାହାଜ ଛାଡ଼ିଲା ଫ୍ରାଙ୍କ୍‌ଫୋର୍ଟ ଅଭିମୁଖେ । ପଶ୍ଚିମ ଜର୍ମାନୀର ଏକ ପ୍ରଧାନ ସହର । ସେଠାରେ କିଛି ସମୟ

ରହିବା ପରେ ଏଠା ଗୁଡ଼ଇଲ ଲଣ୍ଡନ ଅଭିମୁଖେ । ଦଶ ଘଣ୍ଟା ବେଳେ ଲଣ୍ଡନରେ ଆମ ଉଡ଼ାଜାହାଜ ପହଞ୍ଚିବା କଥା ।

ଲଣ୍ଡନରେ ଆମେ ଆଜି କିଛି ସମୟ ପରେ ପହଞ୍ଚିବୁଁ । ଏକଥା ଭାବିଲା ବେଳେ ମନ ଆନନ୍ଦରେ ନାଚ ଉଠୁଥାଏ । ଲଣ୍ଡନ, କି ବଳାଚ ନାଁ । ଧରିଲେ, ଆମ ଦେଶର ଲୋକେ ବଡ଼ ଆଖିରେ ଚାହାନ୍ତି । ସେଇ ଲଣ୍ଡନ ସହରକୁ ଯାଉଛୁ ଭାବିଲା ବେଳକୁ ଆମ ମନ ଆନନ୍ଦରେ କୁଣ୍ଢେ ମୋଟ ନ ହେବ ବା କାହିଁକି ? ଲଣ୍ଡନରେ ଆମର ଦଶଟାଏ ରହିବା କଥା । ପିଲାପିଲାଙ୍କୁ ଧରି ଆମେରିକା ଯାଉ-ଥିବାରୁ ଘରଚଟ୍ଟୁ ଆମେରିକା ସିଧା ସଳଖ ଯାତ୍ରାକୁ ଆମ ପିଲାଏ ଭାଲେ ସହ୍ୟ କରି ନ ପାରିବେ, ସେଥିପାଇଁ ଆମର ଲଣ୍ଡନରେ ରହିବା ବନ୍ଦୋବସ୍ତ କରାହୋଇଥାଏ ପାନ୍ ଆମେରିକାନ୍ ଉଡ଼ା-ଜାହାଜ କମ୍ପାନୀ ତରଫରୁ ।

ଠିକ୍ ଦଶ ଘଣ୍ଟାରେ ଆମ ବୋଇଙ୍ଗ୍ ଜେଟ୍ ଜାହାଜ ଲଣ୍ଡନର ଆନ୍ତର୍ଜାତିକ ଉଡ଼ାଜାହାଜ ଘାଟିରେ ପହଞ୍ଚିଲା । ଏହି ଜାହାଜ ଘାଟିଟି ପୃଥିବୀର ବଡ଼ ବଡ଼ ଉଡ଼ାଜାହାଜ ଘାଟି ଭିତରୁ ଗୋଟିଏ । ଚାରିଆଡ଼େ କେତେ ପ୍ରକାରର ଜାହାଜ ଠିଆ ହୋଇଥାଏ । କିଏ ଯିବାକୁ ବାହାରୁଛି ତ କିଏ ଆସି ପହଞ୍ଚିଲା । ଆମେ ଓହ୍ଲାଇବାକୁ ଉପକ୍ରମ କଲୁଁ । ପାନ୍ ଆମେରିକାନ୍ କମ୍ପାନୀର ଏଜେଣ୍ଟ ଆମକୁ ଲଣ୍ଡନର ଏରିଏଲ ହୋଟେଲକୁ ନେବାପାଇଁ ବାହାରେ ଅପେକ୍ଷା କରିଥାଏ । ଆମେ ଆମ ଜିନିଷପତ୍ର ଧରି ଆମ ପାଇଁ ଅପେକ୍ଷା କରିଥିବା କାର୍‌ରେ ବସିଲୁଁ ହୋଟେଲ ଅଭିମୁଖେ ଯିବା ପାଇଁ ।

ଆମ ପାଇଁ ରିଜର୍ଭ ହୋଇଥିବା ହୋଟେଲ ଏରିଏଲ୍ ଏକ ପ୍ରକାଣ୍ଡ ହୋଟେଲ, ଦେଖିବାକୁ ଗୋଲାକାର ଓ ଅତି ସୁନ୍ଦର ।

ଭିତରର ସାଜସଜ୍ଜା ଅତି ଆଧୁନିକ ଧରଣର । ଏଥିଭିତରେ ଆମେ କେବେ ଏତେ ସୁନ୍ଦର ଓ ଆଧୁନିକ ଧରଣର ହୋଟେଲ ଦେଖି ନ ଥିଲୁଁ । ଲଣ୍ଡନ ଉଡ଼ାଜାହାଜ ଘାଟିଠାରୁ ବେଶି ଦୂର ନୁହେଁ । ଆମକୁ ଏହି ହୋଟେଲରେ ଦିନଟାଏ ରହି ପରଦିନ ଆମେରିକା ଯିବା କଥା । ହୋଟେଲରେ ପହଞ୍ଚି ଦେହ ହାତ ପରିଷ୍କାର କରି ଖିଆପିଆ ଓ ବିଶ୍ରାମର ଯୋଗାଡ଼ କଲୁଁ । ଦିନକ ଭିତରେ ଭାରତରୁ ଆସି ଲଣ୍ଡନରେ ପହଞ୍ଚିବାରୁ ଆମେ ଏତେ ହାଲିଆ ହୋଇ ପଡ଼ିଥାଉଁ ଯେ ସାମାନ୍ୟ କିଛିଏ ସରବତ ପିଇ ବିଛଣାରେ ବସୁଁ ବସୁଁ ଲୁଆଡ଼େ ଶୋଇ ପଡ଼ିଲୁ ।

## ଲଣ୍ଡନ ପରିକ୍ରମା

ନିଦ ଭାଙ୍ଗିଲା ବେଳକୁ ସକାଳ । ଗତ ରାତିର କିଛି କଥା ଆମର ମନେ ନାହିଁ । ରାତି ଭୋଜନ ବି ଆମେ କେହି ଖାଇ ନାହୁଁ । ଉଠିଲା ବେଳକୁ ଆମର ପୂର୍ବ ଦିନର କ୍ଲାନ୍ତି ଆଉ ନ ଥାଏ । ସଅଳ ସଅଳ ପ୍ରାତଃ କର୍ମ ଖିଆପିଆ ଶେଷ କରି ଲଣ୍ଡନ ସହର ପରିକ୍ରମା କରିବା ପାଇଁ ବାହାରି ପଡ଼ିଲୁ । ଲଣ୍ଡନ ସହର ମୋଟ ୬୦୪୧୬ ମାଇଲ ବାଟ । ହୋଟେଲ ଗେଟ୍ ସାମନାରୁ ବସରେ ବସି ଲଣ୍ଡନ ସହର ଅଭିମୁଖେ ଆଗେଇଲୁ । ବସ ଆମକୁ ନେଇ ପହଞ୍ଚାଇ ଦେଲା ଲଣ୍ଡନର କେନ୍ଦ୍ର ସ୍ଥାନ ଭିକ୍ଟୋରିଆ ଷ୍ଟେସନ ନିକଟରେ । ବସରୁ ଓହ୍ଲାଇ ଗୋଟିଏ ଟେକ୍ସି କରି ଲଣ୍ଡନ ସହର ପରିକ୍ରମା କରିବା ପାଇଁ ଠିକ୍ କରିଥାଉଁ ।

ସୁବିଧାରେ ଟାକ୍ସିଟାଏ ମିଳିଗଲା । ଟେକ୍ସି ଡ୍ରାଇଭର ଜଣେ ବୁଢ଼ା ଇଂରେଜ ଲୋକ । ଆମକୁ ଲଣ୍ଡନ ସହରର ସବୁ ଦର୍ଶନୀୟ ସ୍ଥାନ ବୁଲାଇ ଦେବା ଠିକ୍ ହେଲା । ଗାଡ଼ିର ମିଟରରେ ଯା' ପଇସା ଉଠିବ, ଦେଇ ଦେବା କଥା ହେଲା ।

ଟେକ୍ସିରେ ଆମେ ସମସ୍ତେ ବସିଲୁଁ । ଲଣ୍ଡନ ସହର ଦେଖି ଆମ ମନ ଖୁବ ଖୁସି ହୋଇ ଯାଉଥାଏ । ଟେକ୍ସି ଚାଲିଲା । ସଙ୍ଗେ ସଙ୍ଗେ ଆମେ ଯାଇ ପହଞ୍ଚିଲୁ ବ୍ରିଟିଶ ପାର୍ଲିଆମେଣ୍ଟ ପାଖରେ । କି ବିରାଟ, କି କାରୁକାର୍ଯ୍ୟ ପୂର୍ଣ୍ଣ ସେ ପ୍ରାସାଦ । ବ୍ରିଟିଶ ଗଣତନ୍ତ୍ରର ପ୍ରଧାନପୀଠ । ସେଠାରେ କିଛି ସମୟ ବୁଲାବୁଲି କରି ସେଠାରୁ ଗଲୁ, ଓ୍ୱେଷ୍ଟମିନିଷ୍ଟର ଆବେ ଦେଖି । ସେଠାରୁ ବକିଙ୍ଗ୍‌ହାମ ପ୍ରାସାଦ, ସେଣ୍ଟ ଜେମସ ପାର୍କ, ଲଣ୍ଡନ ବିଶ୍ୱବିଦ୍ୟାଳୟ ଆଦି ଦେଖିସାରି ଲଣ୍ଡନର ସୁବିଖ୍ୟାତ ଟାଓ୍ୱାରବ୍ରିଜ ଦେଖିବାକୁ ଗଲୁ । ଟାଓ୍ୱାରବ୍ରିଜ୍ ବାସ୍ତବରେ ଗୋଟିଏ ଦେଖିବା ଜିନିଷ । ଏହି ପୋଲଟି ଲଣ୍ଡନ ମଧ୍ୟ ଦେଇ ବହି ଯାଉଥିବା ଟେମ୍‌ସ ନଦୀ ଉପରେ ଅବସ୍ଥିତ । ଏହି ପୋଲଟି ସାଧାରଣ ପୋଲ ଭଳି ନୁହେଁ । ଏହାକୁ ଇଚ୍ଛା ମୁତାବକ ଖୋଲି କିମ୍ବା ବନ୍ଦ କରି ଦିଆଯାଇ ପାରେ । ଲଣ୍ଡନ ଯେ କେବଳ ଗୋଟାଏ ବଡ଼ ସହର ତା ନୁହେଁ, ଏହା ମଧ୍ୟ ପୃଥିବୀର ଗୋଟାଏ ବଡ଼ ବନ୍ଦର । ଏହି ବନ୍ଦରକୁ ପୃଥିବୀର ବିଭିନ୍ନ ଅଞ୍ଚଳରୁ ଛୋଟବଡ଼ ବହୁ ପାଣି ଜାହାଜ ଯିବା ଆସିବା କରେ । ଏହି ଜାହାଜଗୁଡ଼ିକ ସମୁଦ୍ରରୁ ଆସି ଟେମ୍‌ସନଦୀ ମଧ୍ୟ ଦେଇ ଟେମ୍‌ସନଦୀ କୂଳରେ ଥିବା ବିଭିନ୍ନ ଜାହାଜ ମାଲ ଉତ୍ତାରିବା ସ୍ଥାନ ବା ଡକ୍ ଗୁଡ଼ିକୁ ଯାଏ । ଲଣ୍ଡନ ବନ୍ଦରର ବହୁ ଡକ ଏହି ଟାଓ୍ୱାର ବ୍ରିଜ୍ ଆର ପଟେ ଥିବାରୁ ବହୁ ଜାହାଜକୁ ଏହି ଟାଓ୍ୱାରବ୍ରିଜ୍ ଅତିକ୍ରମ କରିବାକୁ ପଡ଼େ । ଏହି ପୋଲ ତଳେ ଜାହାଜ ଗୁଡ଼ିକ ଯାଇ ପାରୁ ନ ଥିବାରୁ ଜାହାଜ ଆସିଲେ ଏହି ପୋଲକୁ ଖୋଲି ଦିଆଯାଏ, ଫଳରେ ଜାହାଜ ପୋଲର ଆରପଟକୁ ଚାଲିଯାଏ । ଯେତେବେଳେ ଏହି ପୋଲ ଖୋଲିଯାଏ, ସେତେବେଳେ ଏହି ପୋଲ ଉପରେ ଯିବା ଆସିବା ବନ୍ଦ ହୋଇଯାଏ । ଟାଓ୍ୱାରବ୍ରିଜ୍

ଠାରେ ଓହ୍ଲାଇ ଆମେ ସମସ୍ତେ କିଛି ସମୟ ଏଆଡ଼େ ସେଆଡ଼େ ବୁଲାବୁଲି କଲୁ । ଟାୱାର ବ୍ରିଜ୍‌ର ବିରାଟତା ଓ ଏହା କିପରି ଖୋଲି ଯାଇ ପୁଣି ଯୋଡ଼ି ହୋଇଯାଏ, ଆମକୁ ମୁଗ୍ଧ କରୁଥାଏ । ପୋଲଟି ଲଣ୍ଡନର ଅନ୍ୟାନ୍ୟ ପୋଲ ତୁଳନାରେ ଟିକିଏ ଉଚ୍ଚ । ପୋଲ ତଳେ ଟେମ୍‌ସ ନଦୀ ବହି ଯାଉଥାଏ । କି ଗୋଳିଆ ପାଣି ! ବର୍ଷା ଦିନେ ଆମ ନଈପାଣି ଯେତେ ଗୋଳିଆ ଦିଶେ, ଏହା ତା'ଠାରୁ ଆହୁରି ଅଧିକ ଗୋଳିଆ ।

ଟାୱାରବ୍ରିଜ୍ ଦେଖିସାରି ଲଣ୍ଡନର ଅନ୍ୟ ପ୍ରସିଦ୍ଧ ଯାଗା ଟାୱାର ହଲ ଆଡ଼େ ଦେଖିବାକୁ ଗଲୁଁ । ଏହିଠାରେ ବ୍ରିଟିଶ ସାମ୍ରାଜ୍ୟର ରାଜ ପରିବାରର ବହୁ ମୂଲ୍ୟବାନ୍ ହୀରା, ନୀଳା, ମୋତି ମାଣିକ୍ୟ ଆଦି ସାଇତା ହୋଇ ରଖାଯାଇଛି । ପୃଥିବୀର ପ୍ରସିଦ୍ଧତମ ହୀରା "କୋହିନୂର" ଏହିଠାରେ ରଖାଯାଇଛି । ଏହିସବୁ ବହୁମୂଲ୍ୟ ଜିନିଷଗୁଡ଼ିକୁ ସାଧାରଣ ଲୋକେ କେମିତି ଦେଖି ପାରିବେ, ସେଥି-ପାଇଁ ନାନା ବନ୍ଦୋବସ୍ତ କରାଯାଇଛି । ଆମର ବେଳ ନ ଥିବାରୁ ସେଗୁଡ଼ିକ ଦେଖିବାକୁ ଯାଇ ପାରିଲୁ ନାହିଁ । ଆମେରିକାରୁ ଫେରିଲା ବେଳେ ଏସବୁ ଦେଖିବୁ ବୋଲି ଠିକ୍ କରି ହୋଟେଲକୁ ଫେରିଲୁ । ଲଣ୍ଡନରେ ଆଉ ବହୁ ଜିନିଷ ଦେଖିବା ବାକି ରହିଗଲା । ଲଣ୍ଡନର ପ୍ରସିଦ୍ଧ ବ୍ରିଟିଶ ମିଉଜିଅମ୍, ନେସନାଲ ଆର୍ଟ ଗ୍ୟାଲେରି, ପ୍ଲେନ-ଟେରିୟମ ବା କୃତ୍ରିମ ଆକାଶ, ୱାକ୍‌ସ ମିଉଜିୟମ୍ ଆଦି କେତେ କ'ଣ ଜିନିଷ ଦେଖିବା ବାକି ରହିଗଲା ।

## ଭୂଇଁତଳ ରେଳଗାଡ଼ି

ଲଣ୍ଡନରେ ଭୂଇଁତଳ ରେଳଗାଡ଼ିରେ ମଧ୍ୟ ବସି ପାରିଲୁ ନାହିଁ । ଆମେତ ସବୁ ମଟର ଗାଡ଼ିରେ ଚଢ଼ି ବୁଲୁଥାଉଁ,

ଭୂଇଁତଳ ରେଳଗାଡ଼ିରେ ବସିବାକୁ ବେଳ ପାଇଲୁ କେଉଁଠି ? ପିଲାମାନଙ୍କର ଖୁବ୍ ମନ ଥାଏ ଭୂଇଁତଳ ରେଳଗାଡ଼ିରେ ବସିବା ପାଇଁ । ଭୂଇଁତଳ ରେଳଗାଡ଼ି ତ ଆମ ଦେଶରେ ସ୍ୱପ୍ନ । ଭୂଇଁତଳେ କେମିତି ରେଳଗାଡ଼ି ଗଲେ, ଭୂଇଁତଳେ ଷ୍ଟେସନମାନ କେମିତି ରହିଛି, ହଜାର ହଜାର ଲୋକ ଏମାନଙ୍କୁ ଏହି ରେଳରେ କେମିତି ଯିବା ଆସିବା କରନ୍ତି, ଦେଖିବାକୁ କା'ମନ ନ ହେବ ? ଏସବୁ ଶୁଣିଲା ବେଳକୁ ଆମକୁ କୁହୁକପୁରର ଗପ ଭଳି ଜଣା ପଡ଼ୁଥାଏ । ଆମେରିକାରୁ ଫେରିଲାବେଳେ ଏସବୁ ଦେଖିବୁ ବୋଲି ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲୁ । ତାଛଡ଼ା ଆମେ ଯେଉଁ ଆମେରିକାକୁ ଯାଉଛୁ ସେ ଦେଶରେ ଭୂଇଁତଳେ ରେଳଗାଡ଼ି ତେର ଅଛି,ଆଉ ଚିନ୍ତା କାହିଁକି ? ଆମେରିକାର ଯେଉଁ ବୋଷ୍ଟନ ସହରରେ ଆମେ ରହିବୁ ସେଠାରେ ବି ତ ଭୂଇଁତଳ ରେଳଗାଡ଼ି ଅଛି । ସେଠାରେ ଆମେ ଦୁଇ ବର୍ଷରୁ ଅଧିକ କାଳ ରହୁଥିବାରୁ ଭୂଇଁତଳ ରେଳଗାଡ଼ି ଆମର ଦେହସହା ହୋଇଯିବ ବୋଲି ସେମାନଙ୍କୁ କହିଲି ।

ଆମେରିକାର ଭୂଇଁତଳ ରେଳଗାଡ଼ି ବାଲ୍ୟ ଭଳି ଖୁବ୍ ଜଲ୍ଦି । ଆମେରିକାର ସବୁ ସହରରେ ଏହି ଭୂଇଁତଳ ରେଳଗାଡ଼ି ନାହିଁ କେବଳ ମାତ୍ର ଗୁଟିଏ ବଡ଼ ବଡ଼ ସହରରେ ଅଛି । ସେହି ଗୁଟିଏ ସହର ହେଲା ବୋଷ୍ଟନ, ନିଉୟର୍କ, ଫିଲାଡେଲଫିଆ ଓ ଚିକାଗୋ । ଏସବୁ ଭିତରୁ ନିଉୟର୍କର ଭୂଇଁତଳ ରେଳଗାଡ଼ି ହେଲା ସବୁଠାରୁ ବଡ଼ ଓ ସୁନ୍ଦର । ନଦୀ, ସମୁଦ୍ର, ତଳ ମଧ୍ୟ ଦେଇ ଏହି ଭୂଇଁତଳ ରେଳଗାଡ଼ି ଯିବା ଆସିବା କରେ । ଆମେରିକାର ଭୂଇଁତଳ ରେଳଗାଡ଼ି ସେଥିପାଇଁ ବାଲ୍ୟଠାରୁ ଆହୁରି ଆଶ୍ଚର୍ଯ୍ୟ ।

ଉଡ଼ାଜାହାଜ ଘାଟିକୁ ଯିବା ସମୟ ଆସିବାରୁ ଆମେ କାଳ ବିଳମ୍ବ ନ କରି ହୋଟେଲକୁ ଫେରି ଆସିଲୁ । ହୋଟେଲରେ ଖିଆ ପିଆ କରି ସାରିଛୁ କି ନାହିଁ, ଆମକୁ ଉଡ଼ାଜାହାଜ ଘାଟିକୁ ନେବା ପାଇଁ ମଟର ଗାଡ଼ି ଆସି ପହଞ୍ଚିଗଲା । ଆମେ ସଙ୍ଗେସଙ୍ଗେ ଜିନିଷପତ୍ର ଧରି ବାହାରି ପଡ଼ିଲୁ ଲଣ୍ଡନ ଉଡ଼ାଜାହାଜ ଘାଟି ଅଭିମୁଖେ ।

## ଆମେରିକା ଅଭିମୁଖେ

ଉଡ଼ାଜାହାଜ ଘାଟିରେ ପହଞ୍ଚି ପ୍ରଥମେ ପାନ୍ ଆମେରିକାନ୍ ଅଫିସକୁ ଗଲୁ । ସେଠାରେ ଟିକଟ ଆଦି ଦେଖାଦେଖି ପରେ ଆମ ଯିବା ଠିକ୍ ହୋଇଗଲା । ଆମ ପାଖରେ ବିଲାତ ଦେଶର ଯେଉଁସବୁ ମୁଦ୍ରା ଥିଲା, ସେ ମୁଦ୍ରାତକ ଆମେରିକା ଦେଶରେ ଚଳିବ ନାହିଁ ବୋଲି ସେଗୁଡ଼ିକ ବଦଳାଇ ଆମେରିକା ମୁଦ୍ରା ନେଲୁ । ଆମେ ଅଫିସରେ ଏସବୁ କାମ ଦାମ ଶେଷ କଲାବେଳକୁ ଉଡ଼ାଜାହାଜ ପରିଚାରିକା-ମାନେ ଆସି ଆମଠାରେ ପହଞ୍ଚିଗଲେ । ସେମାନଙ୍କ ସହିତ ଆମେ ନିକଟବର୍ତ୍ତୀ ଉଡ଼ାଜାହାଜଠାକୁ ଗଲୁ । ସେହି ଉଡ଼ାଜାହାଜରେ ଆମେ ବିଲାତରୁ ଆମେରିକା ଯିବା କଥା । ଜାହାଜଟି ଖୁବ୍ ବଡ଼, ଜେଟ ଜାହାଜ । ଭାରତରୁ ବିଲାତକୁ ଯେଉଁ ଜେଟ୍ ଜାହାଜରେ ଆସିଥିଲୁ, ଏ ଜାହାଜ ଠିକ୍ ତାରି ଭଳି । ହେଲେ ଏହା ବୋଇଙ୍ଗ ୭୦୭ ନୁହେଁ, ଏହା ହେଉଛି ଡୋଗ୍‌ଲସ କମ୍ପାନୀର ଡ଼. ସି. ଏଇଟ୍ ଜେଟ ଜାହାଜ । ଉଡ଼ାଜାହାଜ ଭିତରକୁ ପରିଚାରିକାମାନଙ୍କ ସହିତ ଯାଇ ଆମ ପାଇଁ ରଖାଯାଇଥିବା ଶ୍ୱେତରଙ୍ଗ ସିଟ୍‌ରେ ବସିଲୁ । ଆମଭଳି ଆହୁରି କେତେ ଯାତ୍ରୀ ମଧ୍ୟ ସେହି ଉଡ଼ା-ଜାହାଜରେ ବସିଲେ । ସେମାନେ ମଧ୍ୟ ଆମଭଳି ଆମେରିକା ଯାଉଥାନ୍ତି । କିଛି ସମୟ ପରେ ଜାହାଜ ଛାଡ଼ିବା ବେଳ ହେଲା ।

ଆମ ଦେହକୁ ସିଟ୍ ସହିତ ବେଲ୍ଟ ସାହାଯ୍ୟରେ ବାନ୍ଧି ଦେବାପାଇଁ ନିର୍ଦ୍ଦେଶ ଆସିଲା । ଲଣ୍ଡନ ଉଡ଼ାଜାହାଜ ଘାଟି ଛାଡ଼ିଲେ ଆଉ ବାଟରେ ଓହ୍ଲାଇବା କଥା ନାହିଁ । ସିଧା ଯାଇ ଆମେରିକାରେ ପହଞ୍ଚିବୁ । ଲଣ୍ଡନ, ଆମେରିକା ମଧ୍ୟରେ ଖାଲି. ରହିଛି ବିରାଟ ଜଳରାଶି, ଆଟଲାଣ୍ଟିକ ମହାସାଗର । ଆମେରିକାରେ ପହଞ୍ଚିବାକୁ ୭।୭ ଘଣ୍ଟା ଲାଗିବ । କିନ୍ତୁ ଘଣ୍ଟା ଅନୁସାରେ ସମୟ ଗଣିଲେ ମୋଟେ ଲାଗିବ ଦୁଇଘଣ୍ଟା । ଆମେମାନେ ଦିନ ୧୨ଟାରେ ଲଣ୍ଡନରୁ ଉଡ଼ା-ଜାହାଜରେ ଛାଡ଼ିବୁଁ, ଆମେରିକାରେ ପହଞ୍ଚିଲା ବେଳକୁ ମୋଟେ ସନ୍ଧ୍ୟା ୭'ଟା ହୋଇଥିବ । ତେଣୁ ମୋଟେ ଲାଗିବ ଦୁଇଘଣ୍ଟା । ଜେଟ୍ ଜାହାଜର ଏ ହେଉଛି କରାମତି । ସେମିତି ଆଉ ଗୋଟିଏ ମଜା କଥା ଜେଟ୍ ଜାହାଜର କରାମତି ବିଷୟରେ । ସକାଳ ୯'ଟାରେ ନିଉୟର୍କରୁ ଜେଟ୍ ଜାହାଜରେ ବାହାରି ହଜାରେ ମାଇଲ ଦୂର ଚିକାଗୋ ସହରରେ ପହଞ୍ଚିଲା ବେଳକୁ ସକାଳ ୯'ଟା ବି ବାଜି ନ ଥିବ । ଠିକ୍ ସମୟରେ ଆମ ଜାହାଜ ଛାଡ଼ିଲା । ଆଟଲାଣ୍ଟିକ ମହାସାଗରର ଘନନୀଳ ଜଳରାଶି ଉପରେ ଉଡ଼ି ଉଡ଼ି ଆମ ଜାହାଜ ଚାଲିଲା ନୀଳ ଚକ୍ରବାଳର ସେପାରିକୁ ।

—୪—

# ଦ୍ୱିତୀୟ ଅଧ୍ୟାୟ

# ଆମେରିକାରେ ଆମ ପରିବାର

ଆମେରିକାରେ ପହଞ୍ଚିବା ପରେ ପରେ ଆମକୁ ଗୋଟିଏ ଘର ନେଇ ରହିବାକୁ ପଡ଼ିଲା । ପ୍ରଥମେ ଯେଉଁ ଘର ନେଇ ରହିଥିଲୁ ସେହି ଘରଟି ଅପେକ୍ଷାକୃତ ଶ୍ରେଷ୍ଠ । ତିନି ମହଲରେ ସରିଷ୍ଠା । ତିନୋଟି ମାତ୍ର ବଖରା । ବଖରାଗୁଡ଼ାକ ବିଶେଷ ବଡ଼ ବି ନୁହେଁ । ତେଣୁ ଭଲ ଘରଟିଏ ପାଇବାପାଇଁ ଡକ୍ଟର ମହାପାତ୍ର ଓ ତାଙ୍କ ବନ୍ଧୁମାନେ ଖୋଜାଖୋଜି କଲେ । ପ୍ରାୟ ପନ୍ଦରଦିନ ଖୋଜାଖୋଜି କରିବା ପରେ ଭଲ ଘରଟିଏ ମିଳିଗଲା । ବଡ଼ଷ୍ଠ ଘର । ଡ୍ରଇଂ ରୁମ୍, ଖାଇବା ଘର, ରୋଷେଇଘର ସହିତ ତିନୋଟି ଶୋଇବା ଘର । କୋଠରୀଗୁଡ଼ିକ ଖୁବ୍ ପ୍ରଶସ୍ତ । ଘରଭଡ଼ା କିଛି କମ୍ ନୁହେଁ, ମାସକୁ ପାଞ୍ଚ ଶହ ଟଙ୍କା । ଏହି ଘରକୁ ଦେଖି ପସନ୍ଦ କରିବାପାଇଁ ମୁଁ ଯେଉଁଦିନ ଯାଇଥିଲି ଘରର ଭଡ଼ା କଥା ଶୁଣି ମୋ ଆଖି ଖୋସି ହୋଇଗଲା । ଡକ୍ଟର ମହାପାତ୍ର ତାଙ୍କ ଚାକିରିରେ ଓଡ଼ିଶାରେ ମାସକୁ ଯେତେ ଦରମା ନ ପାଇବେ, ତା'ଠାରୁ ବେଶୀ ଦେବେ ଏଠି ମାସକୁ ଘର ଭଡ଼ା । ଆମେରିକାର ଘର ଭଡ଼ା ଠିକ ଏ ଅନ୍ୟ ଦେଶ ତୁଳନାରେ ବେଶୀ ।

ଘରଟି ପୁଣି ଆସବାବପତ୍ର ବିହୀନ । ସବୁ କିଛି ଆସବାବପତ୍ର କିଣିବାକୁ ପଡ଼ିଲା । ଡକ୍ଟର ମହାପାତ୍ରଙ୍କ ସଙ୍ଗେ ଗୋଟିଏ ଆସବାବ-ପତ୍ର ବିକୁଥିବା ଦୋକାନକୁ ଗଲୁ । ଦୋକାନ ଦେଖି ଆଖି ଖୋସି ହୋଇଗଲା । ସତରେ କି ବିରାଟ ସେ ଦୋକାନ । ଆମେ ଯେଉଁ ଓ୍ୱାଲଥାମ ସହରରେ ରହୁଥିଲୁଁ, ସେହି ସହରଟି ଏକ ଛୋଟ ସହର । ତେବେ ଏଡ଼ିକି ଛୋଟ ସହରରେ ଯଦି ଏଡ଼େ ବଡ଼ ଆସବାବପତ୍ର ଦୋକାନ, ତେବେ ବଡ଼ ବଡ଼ ସହରରେ ଏ ଦୋକାନ ଆହୁରି କେତେ ବଡ଼ ହୋଇ ନ ଥିବ ? ତେବେ ମନ-ମୁତାବକ ପଲଙ୍କ, ସୋଫାସେଟ୍, ଖାଇବା ଟେବୁଲ୍, ଚେୟାର ଆଦି କିଣିଲୁଁ । ହିସାବ ହେବାରୁ ଜଣାପଡ଼ିଲା ଏ ସବୁର ମୂଲ୍ୟ ଆମ ଦେଶ ଟଙ୍କାରେ ପ୍ରାୟ କୋଡ଼ିଏ ହଜାର ଟଙ୍କା । ବଡ଼ କଥା, ସଙ୍ଗେ ସଙ୍ଗେ ଟଙ୍କା ଦେବା ଦରକାର ନାହିଁ । ପରେ ଦେବାକୁ ପଡ଼ିବ । ଦୋକାନୀ ଆମ ଘର ଠିକଣାରେ ଜିନିଷପତ୍ର ପଠାଇ ଦେବାର ଦାୟିତ୍ୱ ନେଲେ ।

ନୂଆ ଘରଟିଏ କଲୁ ସତ, ସେହି ନୂଆ ଘରଟିକୁ ସଜାଇ-ବାକୁ ଲାଗିଗଲା ପୂରା ଗୋଟିଏ ମାସ । ଧୀରେ ଧୀରେ ପାଖ ପଡ଼ୋଶୀ ଲୋକଙ୍କ ସହିତ ଆମ୍ଭର ପରିଚୟ ହେଲା । ପ୍ରଥମେ ପ୍ରଥମେ ମୁଁ ଇଂରାଜୀ କଥାବାର୍ତ୍ତା ବୁଝିପାରୁ ନ ଥାଏ । ମାସେ ଖଣ୍ଡେ ରହିବା ପରେ ଅଳ୍ପ କିଛି କିଛି ବୁଝିପାରିଲି । ଝିଅ ଟୁନୁ ଓ ପୁଅ ବାବୁଲି ମଧ୍ୟ କିଛି ବୁଝିପାରୁ ନ ଥାନ୍ତି । ଅଳ୍ପଦିନ ପରେ ସେମାନେ ବେଶ୍ ବୁଝିପାରିଲେ ଓ କହିପାରିଲେ । ମୁଁ ମଧ୍ୟ ବୁଝିପାରିଲି ଓ କଥାବାର୍ତ୍ତା କରିପାରିଲି । ଆମ ଘର ଭିତରେ ଡକ୍ଟର ମହାପାତ୍ର ହେଲେ ଆମ ସମସ୍ତଙ୍କର ଇଣ୍ଟରପ୍ରିଟର । ଆମ ପଡ଼ୋଶୀମାନେ ଆମକୁ ଯାହା କହନ୍ତି ଡକ୍ଟର ମହାପାତ୍ର ତାକୁ ଓଡ଼ିଆ କରି ଆମକୁ ବୁଝାଇ

ଦିଅନ୍ତି । ଆମେ ଯାହା କହୁଁ, ସେ ସବୁ ଇଂରାଜୀ କରି ସେମାନଙ୍କୁ ବୁଝାଇ ଦିଅନ୍ତି ।

ଆମେ ଯେଉଁ ଘରେ ପ୍ରଥମେ ରହୁଥିଲୁ ସେହି ଘରର ମାଲିକାଣୀ ଅତ୍ୟନ୍ତ ସୁନ୍ଦର ଲୋକ । ସେ ଆମ ସମସ୍ତଙ୍କୁ ଇଂରାଜୀ ଶିଖାଇବାପାଇଁ ଅତି ଯତ୍ନଶୀଳା । ତାଙ୍କର ଭଡ଼ାଘରେ ୧୫।୧୬ ଦିନ ରହିବାଦ୍ୱାରା ଆମର ଢେର କିଛି ଶିଖି ହୋଇଗଲା । ଆମେରିକାର ଲୋକମାନେ କେମିତି ଘର ସଜାନ୍ତି ମୁଁ ପ୍ରଥମେ ତାଙ୍କଠାରୁ ଶିଖିଲି । ଉକ୍ତଙ୍କର ମହାପାତ୍ର କଲେଜ ଗ୍ଲଗଲେ ଓ ମାଲିକାଣୀଙ୍କ ସ୍ୱାମୀ କାମକୁ ବାହାରିଗଲେ ଆମେ ସମସ୍ତେ ଘରି ସାଙ୍ଗ ହେଉଁ । ଆମ ସହିତ ଯୋଗ ଦିଅନ୍ତି ତଳ ମହଲର ଆଉ ଜଣେ ସ୍ତ୍ରୀ ଲୋକ । ତାଙ୍କ ସ୍ୱାମୀ ମଧ୍ୟ ସେହି କଲେଜରେ କାମ କରନ୍ତି । ଆମେ ସମସ୍ତେ ମିଳିମିଶି ଦ୍ୱିପ୍ରହରେ ବୁଲିଯାଉ । ବେଳେ ବେଳେ ସେମାନେ ଆମ ସମସ୍ତଙ୍କୁ ନିଜ କାରରେ ନାନା ଆଡ଼କୁ ବୁଲାଇ ନିଅନ୍ତି । ଆମେରିକା ରନ୍ଧା, ଆମେରିକା ଆଦବ୍ କାଏଦା, ଆମେରିକାର ଘରସଜା, ଘର ସଫାସୁତୁରା ଆଦି ସେମାନେ ମୋତେ ଶିଖାଇଦେଲେ । ଦି ଜଣଯାକ ଉଚ୍ଚ ଶିକ୍ଷିତା, ଉଭୟେ ଏମ୍. ଏ. ପାସ୍ କରିଥାନ୍ତି । ଆଗରୁ ଶିକ୍ଷକତା କରୁଥିଲେ, ଏବେ ଆଉ କରୁନାହାନ୍ତି । ତେଣୁ ସେ ଦୁହେଁ ଶିକ୍ଷା ଦେବାରେ ବେଶ୍ ଧୂରନ୍ଧର ।

ଆମେରିକାରେ ଯେତେବେଳେ ରହିଲୁଁ, ସେମାନଙ୍କ ଦେଶରେ ସେମାନେ ଯେମିତି ଚଳନ୍ତି ଆମକୁ ସେମିତି ଚଳିବାକୁ ପଡ଼ିବ । ସେମାନେ ଯେମିତି ଘର ସଜାନ୍ତି, ଆମକୁ ସେମିତି ଘର ସଜାଇବାକୁ ପଡ଼ିବ । କାରଣ ସେମାନେ ଆମ ଘରକୁ ବୁଲି ଆସିଲେ କାଳେ

କିଛି ଖରାପ ଧାରଣା କରିବେ । ସେମାନଙ୍କର ସବୁ ଅଭ୍ୟାସ ଖାଇବା ରୀତି, ଆମେ ସେହି ଅନୁସାରେ ନଖାଇଲେ ମଧ୍ୟ ସେମାନଙ୍କ ରୀତିନୀତି ଜାଣିବା ଦରକାର । ତା ନ ହେଲେ ଆମେ ସେମାନଙ୍କ ଘରକୁ ଯାଇ କାଳେ ଅପଦସ୍ତ ହୋଇପଡ଼ିବୁ । ଆମେରିକାରେ ପିଲାଏ ଦୁଧ ପିଅନ୍ତି କିନ୍ତୁ ଦୁଧ ଗରମ କରି ନୁହେଁ । ରେଫ୍ରିଜେରେଟରରୁ ଦୁଧ କାଢ଼ନ୍ତି ସେହି ଥଣ୍ଡା ଦୁଧକୁ ଢକ ଢକ କରି ପିଇଯାନ୍ତି । ସେମାନେ ଦୁଧକୁ ଗରମ କରି ପିଇବା କଥା ମୋଟେ ଜାଣନ୍ତି ନି । ମନେକର ଆମ ପିଲାଏ ତାଙ୍କ ଘରକୁ ବୁଲି ଯାଇଛନ୍ତି, ଆମ ପିଲାଙ୍କୁ ଦୁଧ ପିଇବାପାଇଁ ଯାଚଲେ, ଆମେ ଯଦି କହିବା ଆମ ପିଲାଏ ଥଣ୍ଡା ଦୁଧ ପିଇବେ ନି, ଟିକିଏ ଗରମ କରି ପିଇବାକୁ ଦିଅ ସେମାନେ ହସିବେ ଆମ ଆଗେ । ସେମାନେ ପଚାରିବେ ଦୁଧକୁ ଗରମ କରି ପିଇବ କାହିଁକି ? କଫି ସିନା ଗରମ କରି ପିଅନ୍ତି । ଦୁଧକୁ ଗରମ କରି ପିଇବା ଦରକାର ନାହିଁ । ତେଣୁ ଆମର ସେମାନଙ୍କ ଘରକୁ ଗଲେ ସେମାନଙ୍କ ରୀତିରେ ପିଇବାକୁ ହେବ । ନ ହେଲେ ସେମାନଙ୍କୁ ଆମର ଏତେ ବୁଝାଇବ କିଏ ? ସେମାନେ ତ ଆଉ ଜାଣନ୍ତି ନି ଗାଈ ଦୁଧକୁ ଗରମ କରି କାହିଁକି ଆମ ଦେଶରେ ପିଅନ୍ତି । ସେ କଥା ତ ବୁଝାଇ ବସିଲେ କେତେ କଥା କହିବାକୁ ପଡ଼ିବ ସେମାନଙ୍କୁ ।

— : —

## ତୃତୀୟ ଅଧ୍ୟାୟ

# ଆମେରିକା ଲୋକଙ୍କ ଚଳଣି

ଆମେରିକାରେ ଆମେ କିଛିଦିନ ବସବାସ କରିବା ପରେ ସେ ଦେଶର ଲୋକଙ୍କ ଚଳଣି, ବ୍ୟବହାର; ସାମାଜିକ ରୀତିନୀତି, ଘର କରଣା ସବୁ ଆମକୁ ଅଲଗା ଅଲଗା ଲାଗିଲା ପ୍ରଥମେ ପ୍ରଥମେ ମୁଁ ତ ସେମାନଙ୍କ ଭାଷା ବୁଝିପାରୁ ନଥିଲି । କିନ୍ତୁ କିଛିଦିନ ରହିବା ପରେ ସେମାନଙ୍କ ଭାଷା ବୁଝିବା ଯେତେବେଳେ ସମ୍ଭବପର ହେଲା, ମୁଁ ସେମାନଙ୍କ ରୀତିନୀତି, ଚଳଣି ଆଦି ଜାଣିବାକୁ ଚେଷ୍ଟା କଲି । ଆମେ ଯେତେବେଳେ ସେମାନଙ୍କ ଦେଶରେ ଦୁଇବର୍ଷରୁ ଊର୍ଦ୍ଧ୍ୱକାଳ ରହିବୁ ସେମାନଙ୍କ ସମାଜରେ ଚଳିବାର ରୀତିନୀତି ନ ଜାଣିଲେ ହେବ ବା କେମିତି ? ଯଦିଚ ଆମେ ଭାରତୀୟ ରୀତିନୀତି ଛାଡ଼ି ସେମାନଙ୍କ ରୀତିନୀତି ଗ୍ରହଣ କରିବାକୁ ଇଚ୍ଛୁକ ନୋହୁଁ, ସେମାନଙ୍କ ଚଳଣି, ଆଦବ୍‌କାଏଦା, ରୀତିନୀତି ଜାଣିଲେ ସେମାନଙ୍କ ଭିତରେ ଚଳିବା ସହଜ ସାଧ୍ୟ ଓ ପ୍ରୀତିକର ହେବ ।

ଆମେରିକା ଲୋକଙ୍କ ଚଳାଚଳ ଦେଖିବାକୁ ଭାରି ମଜା ଲାଗେ । ସେମାନଙ୍କ ଚଳପ୍ରଚଳ ଆମଠାରୁ ଢେର ଅଲଗା । ପୁଅମାନେ ବଡ଼ ହୋଇ ବାହା ହୋଇଗଲେ ବାପଠାରୁ ଅଲଗା ହୋଇଯାନ୍ତି । ଏକା ସହରରେ ବାପ ପୁଅ ରହୁଥିଲେ ହେଁ ବାପ ମା ଗୋଟିଏ ଯାଗାରେ

ରହୁଥିବେ ତ ପୁଅ ବୋହୂ ଆଉ ଏକ ଯାଗାରେ ଘରକରି ରହୁଥିବେ । ବାପ, ମା ଘରକୁ ସେମାନେ କୁଣିଆ ବନ୍ଧୁବାନ୍ଧବ ଭଳି ବୁଲି ଆସିବେ । ବଡ଼ ହୋଇଗଲେ ଯେମିତି ଝିଅ ଆମ ଦେଶରେ ବାପ ମା ଠାରୁ ଚାଲିଯାଇ ସ୍ୱାମୀ ସହିତ ଅଲଗା ଘର କରି ରହେ ଏଠି ଠିକ୍ ସେଇମିତି । ଝିଅ ଭଳି ପୁଅ ମଧ୍ୟ ବଡ଼ ହେବ ପରେ ଅଲଗା ହୋଇ-ଯାଏ । ବାପ ମା ଘରକୁ ପୁଅ ଝିଅ ଯଦି ଏକ ସଙ୍ଗରେ ବୁଲିଆସନ୍ତି ତେବେ ଦେଖିବ ଘରେ ଝିଅର ଅଧିକାର ବେଶୀ । ମା ପାଖରେ ଝିଅର ଅଳି ବେଶୀ । ପୁଅର ଅଳି କମ୍ । ବାପ ମା' ପାଖକୁ ଝିଅମାନେ ହିଁ ବେଶୀ ଆସନ୍ତି । ପୁଅ ଆସନ୍ତି କମ୍ । ଆମ ଦେଶରେ ଯେମିତି ପୁଅ ଯଦି ବାପ ମା'ଠାରୁ ଅଲଗା ହୋଇ ଏକା ସହରରେ ରହିବେ ଆମ ଦେଶର ଲୋକେ କେତେ କଣ କହିବେ । କେତେ ଟିପ୍ପୁରଟାପରା ହେବେ । ସେମାନଙ୍କ ଦେଶରେ ସେମିତି କିଛି ନାହିଁ । ସାମାଜିକ ନିୟମ ଏ ଆମଠାରୁ ଅଲଗା ।

ସେ ଦେଶର ବାପ ମା'ଙ୍କୁ ଛାଡ଼ି ଅନ୍ୟମାନେ ନାଁ ଡ଼କାଡ଼କି ହୋଇ ଚଳନ୍ତି । ସାନଭାଇ ବଡ଼ଭାଇ ନାଁ ଧରି ଡ଼ାକିବ । ସାନ ଭଉଣୀ ବଡ଼ଭାଇର ନାଁ ଧରି ଡାକିବ । ପିଲାମାନେ ମାଷ୍ଟ୍ର-ମାଷ୍ଟ୍ରାଣୀଙ୍କ ନାଁଧରି ଡାକିବେ । ବଡ଼ଭାଇ ଯେତେ ବଡ଼ ହେଲେବି ନୂଆ କଥା କହି ଶିଖୁଥିବା ଗ୍ରେଟ ଭାଇଟି ବି ବଡ଼ ଭାଇର ନାଁଧରି ଡାକିବ । ଆମ ଦେଶଭଳି ଭାଇ, ଅପା କି ସାର୍ ଆଦର ପ୍ରଚଳନ ନାହିଁ ।

ଆମ ଦେଶରେ ବାପା ଦାଦାଙ୍କୁ ଯେମିତି ଖାତିର ସେ ଦେଶରେ ନାହିଁ । ପୁଅମାନେ ବଡ଼ ହୋଇଗଲେ ବାପ ସହିତ ସାଙ୍ଗଭଳି କଥାବାର୍ତ୍ତା କରନ୍ତି । ବାପ ଆଗରେ ପୁଅ ସିଗାରେଟ

ଖାଉଥିବ । ଦରକାର ପଡ଼ିଲେ ପୁଅଠାରୁ ସିଗାରେଟ୍ ନେଇ ବାପ ତା’ ସିଗାରେଟରେ ନିଆଁ ଲଗାଇବ । ବାପ ଆସିଗଲ, ପୁଅ ବସିଛି, ଠିଆ ହେବା ଦରକାର ନାହିଁ । ବାପ ଆସି ନିଜେ ଚେୟାର ଟାଣିନେଇ ପୁଅଠାରେ ବସିବ । ବାପପୁଅଙ୍କ ବ୍ୟବହାର, ଚଳପ୍ରଚଳ ଦେଖିଲେ ନ ଜାଣିଥିବା ଲୋକ ଭାବି ପାରିବନି ଏ ଦୁହେଁ ବାପପୁଅ ବୋଲି । ଆମର ସଂସ୍କୃତିରେ ଯେଉଁ କଥା ଅଛି, “ପ୍ରାପ୍ତେଷୁ ଷୋଡ଼ଶ ବର୍ଷେ ପୁତ୍ର ମିତ୍ରଂଇବା-ଚରେତ୍,” ଉକ୍ତିଟି ପ୍ରକୃତରେ ସେମାନଙ୍କ ଦେଶରେ ପ୍ରଯୁଜ୍ୟ ।

ସେମାନଙ୍କ ଖାଇବା ରୀତି ମଧ୍ୟ ଅଲଗା । ଆମ ଦେଶରେ ଆମେ କମଳା ଗୋଟିଏ ଖାଇଲେ କେମିତି ଖାଉଁ ? କମଳା ଦେହରୁ ଚୋପା ଛଡ଼ାଉଁ । କୁଣା କୁଣା କରି ଖାଉଁ । କିନ୍ତୁ ଆମେରିକାରେ କେହି ସେମିତି ଖାଆନ୍ତି ନାହିଁ । ସେମାନେ ଛୁରୀରେ କାଟି ପକାଇବେ ଚୋପା ସହିତ । ଚୋପା ଭିତର ଶସକୁ ନେଇ ପାଟିରେ କାମୁଡ଼ି ଖାଇଯିବେ । ସେମାନେ ଆମ ଲେମ୍ବୁ ଖିଆଦେଖି ଚାଟଙ୍ଗା । ବେଳେ ବେଳେ ଭାରି ଆଶ୍ଚର୍ଯ୍ୟ ହୋଇ ଆମ ଲେମ୍ବୁ ଖିଆକୁ ଅନାଇ ଦେଖନ୍ତି ।

ତାଙ୍କ ଦେଶରେ ଅଲଗା ତରକାରୀ ରନ୍ଧା ପ୍ରଣାଳୀ । ଖାଲି ସିଝା । ଯେଉଁ ପନିପରିବା କି ଶାଗ, ମାଂସ ଆଣିବେ ସିଝାଇ ଖାଇବେ । ହଳଦୀ କି ଲୁଣ କିଛି ପଡ଼ିବ ନି, ମସଲକଥା ଛାଡ଼ । ଖାଇଲାବେଳେ ଯା’ ଲୁଣ ମିଶାଇ ଖାଇବେ । ମସଲା ଭିତରେ ମରିଚଗୁଣ୍ଡା । ଦରକାର ପଡ଼ିଲେ ସିଝା ଉପରେ ଗୁଣ୍ଡ ଝାଡ଼ି ଖାଇବେ । ତାଙ୍କ ଖାଇବା ଆମେ ସବୁ ଦେଖିଲେ ଆମ ଦେହ ସିଡେଇ ଉଠିବ । ମାଂସଗୁଡ଼ାକ ସେମିତି ସିଝା ହୋଇଥିବ,

ଖାଇପିବେ । ତାଙ୍କୁ ଯଦି ଆମ ଦେଶଭଳି ହଳଦୀ, ମସଲା ପଡ଼ିଥିବା ମାଂସ ଝୋଳ ଦେବ ଖାଇପାରିବେନି । ତ ଙ୍କ ଅଣହଳଦିଆ ସିଝା ତରକାରୀ ଆମ ଆଖିକୁ ଯେମିତି ରୁଚେନି, ଆମ ହଳଦି, ମସଲା ଦିଆଯାଇଥିବା ଝୋ ଳ ସେମାନଙ୍କ ଆଖିକୁ ରୁଚେନି । ଆମ ଘରକୁ ଯେତେ ଆମେରିକାନ୍ ପରିବାର ରାତି ଭୋଜନ ପାଇଁ ନିମନ୍ତ୍ରିତ ହୋଇ ଆସିଛନ୍ତି ସେମାନେ ଆମ ରନ୍ଧା ଖାଇ ବହୁ ପ୍ରଶଂସା କରିଛନ୍ତି ମତ ମାତ୍ର ସେଇଟା ଭଦ୍ରତା ଖାତିରରେ, କିନ୍ତୁ ଆମ ସହିତ ତାଳ ଦେଇ ଖାଇପାରି ନାହାନ୍ତି । କାରଣ ହଳଦୀ ମସଲା ପଡ଼ିବା ତରକାରୀ ସେମାନଙ୍କୁ ଦେଖିବାକୁ ସୁନ୍ଦର ଲାଗେନି । ଖାଇବା ତ ଦୂରର କଥା । ସେମାନେ ମାଂସ ଆଦି ଅଧିକ ସମୟରେ ସେକ୍ଷ୍ଟ କରି ଖାଆନ୍ତି, ସିଝାଇ ଖାଇବା କମ ।

ଆମେରିକାର କି ପୁରୁଷ କି ସ୍ତ୍ରୀ ସମସ୍ତେ ଭାରି ମେଳାପୀ । ତୁମ ସହିତ ପରିଚିତ ହୋଇଗଲେ ନାଁଧରି ଡାକିବେ ସତେ ଯେମିତି ତୁମର ସାଙ୍ଗ । ମନେକର ତୁମେ ଜଣେ ଲୋକଙ୍କୁ ଚିହ୍ନିନ ଯଉଁ ଯାଉଁ ବାଟରେ ଘାଟରେ ଦେଖା ହୋଇଗଲା । ସେ ତୁମକୁ ନିଶ୍ଚୟ 'ହାଏ' କହିବ । 'ହାଏ'କୁ ଆମର ଯେମିତି " କେମିତି ଅଛ" ସହିତ ତୁଳନା କରାଯାଇ ପାରେ । 'ହାଏ', 'ହାଲୋ' ଅତି ମାମୁଲି କଥା । ଚିହ୍ନା ପରିଚୟ କିଛି ଦରକାର ନାହିଁ । ଭାରତୀୟ ସ୍ତ୍ରୀଲୋକ ଗୋଟିଏ ଦେଖିଲେ ଦୋକାନ ବଜାର ଆଦିରେ ମାଇପେ ଘେରି ଆସିବେ । କେତେକଥା ପଚାରି, ସତେ ଯେମିତି ସେମାନଙ୍କ ଭିତରେ ତୁମେ ଗୋଟିଏ ବିଖ୍ୟାତ ଲୋକ । ଭାରତୀୟ ସ୍ତ୍ରୀଲୋକଙ୍କ ପ୍ରତି ଭାରି ସମ୍ମାନ । ଘୃଣା ମୋଟେ ନାହିଁ ।

ସେମାନଙ୍କ ଦୋକାନ, ବଜାରରେ ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କ ସଂଖ୍ୟା ବେଶି । ହାଟକୁ କି ବଜାରକୁ ଗଲେ ସ୍ତ୍ରୀଲୋକ-

ମନେ ହେଁ ଯିବେ । ଦୋକାନ ସଉଦା, ହାଟ ସଉଦାଠାରୁ ଆରମ୍ଭ କରି ସବୁ କରିବେ ସ୍ତ୍ରୀ ଲୋକମାନେ । ସୁପର ମାର୍କେଟରୁ କ ପରିବା କ ଫଳ,କ ମାଛ,କ ମାଂସ କଣାଯିବ, ସେସବୁର ତାଲିକା କରିବ ସ୍ତ୍ରୀ ଓ ସେହି ଅନୁସାରେ କଣିବ ବ ସ୍ତ୍ରୀ । ବଜାର ହାଟକୁ ପୁରୁଷ ସାଧାରଣତଃ ଯାଆନ୍ତି ନ, ଯଦ ଯାଆନ୍ତି ତେବେ ଜନଷପତ୍ର ବୁହା ବୋହିବାରେ ମାତ୍ର ସାହାଯ୍ୟ କରନ୍ତି । ପୋଷାକପତ୍ର, ଆସବାବ୍ପତ୍ର ଆଦ ଯା' କଣା ହେବ ସ୍ତ୍ରୀର ମତ ଅନୁସାରେ କଣା ହେବ । ଏମିତ କ ସ୍ୱାମୀର ସୁଟ୍ପେଣ୍ଟ ଯଦ କଣାଯାଏ ତେବେ ପସନ୍ଦ କରିବ ସ୍ତ୍ରୀ । ରେଡ଼ିଓ, ଟେଲିଭିଜନ୍, ରେକର୍ଡ଼ ଆଦ କଣାହେବ ସ୍ତ୍ରୀର ମତ ଅନୁସାରେ । ଗୋଟିଏ ଘରଭଡ଼ା ନେବାକୁ ହେବ, କ ନୂଆ ଘର-ଟାଏ କଣିବାକୁ ପଡ଼ିବ ତେବେ ସ୍ତ୍ରୀର ମତଅନୁସାରେ ହେବ ଘରକୁ ପସନ୍ଦ କରିବା ଦାୟିତ୍ୱ ସ୍ତ୍ରୀର, ପୁରୁଷର କିଛିନାହିଁ । ଘରର ଟଙ୍କା ପଇସା କାରବାର ସବୁ ସ୍ତ୍ରୀ ହାତରେ । ଇମିତକ ସ୍ୱାମୀର ଦରମା ଚେକ୍ ଆକାରରେ ଡାକ ଯୋଗାଯୋଗରେ ଆସେ ସ୍ତ୍ରୀ'ନାଁରେ । ବେଙ୍କରେ ସ୍ତ୍ରୀ ନାଁରେ ଏକାଉଣ୍ଟ । ବେଙ୍କରୁ ଟଙ୍କା ଦେଣନେଣ କରେ ସ୍ତ୍ରୀ । ଗୋଟିଏ ସାଧାରଣ ବେଙ୍କକୁ ଯିବ, ଦେଖିବ ସବୁଆଡ଼େ ଖାଲି ସ୍ତ୍ରୀ ଲୋକମାନେ । ବେଙ୍କରେ କର୍ମଚାରୀ ସ୍ତ୍ରୀଲୋକ । ଟଙ୍କା ନେବା ଆଣିବା କରୁଛନ୍ତି ସ୍ତ୍ରୀ ଲୋକମାନେ ।

ଘରର ସବୁକାମ ସ୍ତ୍ରୀ କରେ । ଚାକରବାକର ପ୍ରଶ୍ନ ସେଠି ନାହିଁ । ସବୁ ନିଜେ ହାତରେ କରିବେ । ଘରଝାଡ଼ାଠାରୁ ଆରମ୍ଭ କରି ରନ୍ଧାବଢ଼ା, ବାସନ ମଜା, ଲୁଗାସଫା, ସବୁକାମ ସ୍ତ୍ରୀଲୋକ-ମାନେ ନିଜେ କରନ୍ତି । ତାଛଡ଼ା ପିଲାପିଲାଙ୍କ ପାଇଁ କେକ୍, ବିସ୍କୁଟ, ମିଠାଇ ଆଦ ନିଜ ହାତରେ କରି ରଖିବେ । କେହି ଅତିଥି ଆସିଲେ ଖାଲି ଚା କ କଫି କପେ ଦେବେ ନ, ଘରେ ତିଆରି କରି ରଖିଥିବା

କେକ୍, ବିସ୍କୁଟ, ଖୁବ୍ ଆଦର ଆଣି ଥାଇତେ । ଅତିଥି ସତ୍କାର, ଅତିଥି ଚର୍ଚ୍ଚା ସ୍ତ୍ରୀମାନଙ୍କ ଦାୟିତ୍ୱ । ପୁରୁଷର ଦାୟିତ୍ୱ କିଛି ନାହିଁ । ପୁରୁଷର ଏକମାତ୍ର ଦାୟିତ୍ୱ ହେଲା ରୋଜଗାର କରିବା । ସପ୍ତାହ ଶେଷକୁ ହେଉ ବା ମାସ ଶେଷକୁ ହେଉ, ଦରମା ଆଣି ସ୍ତ୍ରୀ ହାତରେ ଦେବା । ସ୍ତ୍ରୀ ପୁରା ଦାୟିତ୍ୱ ନେଇ ଘର ଚଳେଇବ । ବାସ୍ତବିକ ଜଣେ ଆମେରିକାନ୍ ସ୍ତ୍ରୀ ଲୋକ ଯେତେ କାମ କରେ ଦେଖିଲେ ଆମ ଦେଶ ସ୍ତ୍ରୀଲୋକେ କାଠ ହୋଇଯିବେ । ଗୋଟିଏ ପରିବାରର ଯାବତୀୟ କାମ ବଜାର କରିବାଠାରୁ ଆରମ୍ଭ କରି ପୋଷାକପତ୍ର ସିଲାଇ, ରନ୍ଧାବଢ଼ା ପର୍ଯ୍ୟନ୍ତ ସବୁକାମ ସେ ଦେଶର ସ୍ତ୍ରୀଲୋକମାନେ କରନ୍ତି । ପୁରୁଷମାନେ ଯା' ବେଳେବେଳେ ସାହାଯ୍ୟ କରନ୍ତି । ଅବଶ୍ୟ ସେମାନେ ଏତେ କାମ କରି ପାରୁଛନ୍ତି କାହିଁକ ନା ସେମାନଙ୍କୁ କାମରେ ସାହାଯ୍ୟ କରିବା ପାଇଁ ଯନ୍ତ୍ର ରହିଛି । ଆମ ଦେଶରେ ସେମାନେ ଯଦି ସବୁକାମ ହାତରେ କରୁଥାନ୍ତେ, ତେବେ ମୋଟେ ପାରନ୍ତେନି । ଗୋଟିଏ ଗୋଟିଏ ଆମେରିକାନ ପରିବାରରେ ଏତେ ଯନ୍ତ୍ରପାତି କାମ କରୁଛି, ଦେଖିଲେ ଯେ କେହି ଲୋକ ତାଟଙ୍ଗା ହୋଇଯିବ । ପରେ ସେ ସମ୍ପର୍କରେ ଆଲୋଚନା କରାଯାଇଛି ।

ଆମେରିକାନମାନଙ୍କ ସମାଜରେ କେତେ ନୂଆ ନୂଆ କଥା, ନ ଦେଖିଲେ ସହଜରେ ଧାରଣା କରି ହେବନି । ପିଲାମାନଙ୍କ ପଢ଼ାପଢ଼ି ପାଇଁ ବାପ ମାଙ୍କର ପଇସା ଖର୍ଚ୍ଚ ନାହିଁ । ହାଇସ୍କୁଲ୍ ପଢ଼ା ଶେଷ ପର୍ଯ୍ୟନ୍ତ ସବୁ ଖର୍ଚ୍ଚ ସରକାର ଦିଅନ୍ତି । ଏମିତିକି ବହି ପତ୍ର ଖାତା, ପେନ୍‌ସିଲ୍, କାଗଜ, କଲମ ସବୁ ସରକାର ଦେବେ । ତା ଛଡ଼ା ବିନା ପଇସାରେ ବସରେ ସ୍କୁଲ ନେଇଯିବେ ଓ ଘରେ ଛାଡ଼ି ଦେଇଯିବେ । ଅବଶ୍ୟ ବଡ଼ ବଡ଼ ପିଲାମାନଙ୍କ ପାଇଁ ବସ

ବନ୍ଦୋବସ୍ତ ନଥାଏ । ତଳ କ୍ଲାସର ଗ୍ରେଟ ଗ୍ରେଟ ପିଲାଙ୍କ ପାଇଁ ବସ ଧରାବନ୍ଧା । ପଢ଼ାପଢ଼ି ପାଇଁ ଇମିତି ସୁବିଧା ଖୁବ କମ୍ ଦେଶରେ ଅଛି । କିନ୍ତୁ ହାଇସ୍କୁଲ୍, ପଢ଼ା ସରିଗଲେ କଲେଜ ପଢ଼ା ଖୁବ ଖର୍ଚ୍ଚାନ୍ତ ଜନକ । ତେଣୁ ବହୁ ପିଲା ହାଇସ୍କୁଲ୍ ପଢ଼ା ଶେଷ କରି ଚାକିରି କରନ୍ତି । ଯେଉଁମାନେ କଲେଜ ପଢ଼ାର ଖରଚ ତୁଲାଇ ପାରିବେ ସେହିମାନେ କେବଳ କଲେଜ ମାଡ଼ନ୍ତି । କଲେଜରେ ପଢ଼ିବାପାଇଁ ଯେଉଁ ଦରମା ପିଲାମାନଙ୍କୁ ଦେବାକୁ ପଡ଼େ, ଆମେ ଶୁଣିଲେ ଆଖି କାଢ଼ି ପକାଇବା । ଗୋଟିଏ ଗୋଟିଏ ପିଲା କଲେଜରେ ମାତ୍ର ନମାସ ପଢ଼ିବା ପାଇଁ କଲେଜକୁ ଦରମା ଦିଅନ୍ତି ଦଶହଜାର ଟଙ୍କାରୁ ଊର୍ଦ୍ଧ୍ୱ । ସେ ଯାଗାରେ ଆମ ଦେଶରେ ବର୍ଷକୁ ପିଲାମାନଙ୍କୁ ଶହେଟଙ୍କା ପଡ଼ୁଛି କି ନାହିଁ ସନ୍ଦେହ । ପିଲାମାନଙ୍କର ଏହି ସ୍କୁଲ ଦରମା ତା'ହେଲେ କିଏ ଦିଏ ? ବାପ ମାମାନେ ଗୋଟିଏ ସୁଦ୍ଧା ପଇସା ଦିଅନ୍ତି ନି । କଲେଜରେ ପଢ଼ୁଥିବା ପୁଅ ଝିଅର ଦାୟିତ୍ୱ ହେଲା ନିଜ ଦରମାତକ ନିଜେ ରୋଜଗାର କରି ଯୋଗାଡ଼ କରିବା । ଆମେରିକାର କଲେଜମାନଙ୍କରେ ବର୍ଷକରେ ତିନିମାସ ଖରାଛୁଟି । ଏହି ଛୁଟି ମାସରେ କଲେଜ ପଢ଼ୁଆ ପୁଅଝିଅମାନେ ବିଭିନ୍ନ ସ୍ଥାନରେ ଯାଇ ଚାକିରି କରନ୍ତି । କିଏ ହୋଟେଲରେ ଚାକର ହେଲାଣି ତ, କିଏ ଦୋକାନରେ ଝାଡ଼ୁଦେଲାଣି, ତ କିଏ ସୁପର ମାର୍କେଟରେ ସେଲସମ୍ୟାନ ହେଲାଣି । ଏହି ତିନିମାସ ଖଟି ସେମାନେ ହାରାହାରି ପ୍ରାୟ ଦଶହଜାର ପର୍ଯ୍ୟନ୍ତ ଟଙ୍କା ରୋଜଗାର କରି ସାଇତି ରଖନ୍ତି । ଠିକ୍ କଲେଜ ଖୋଲିଲା ବେଳକୁ ପୁଣି ବର୍ଷକର ଦରମା ଦେଇ କଲେଜରେ ଭର୍ତ୍ତି ହୁଅନ୍ତି । ବାପମାଙ୍କଠାରୁ ଖାଇବା ଖର୍ଚ୍ଚଟା ଉଠାନ୍ତି । ଯେତେବଡ଼ ଅଫିସର ହେଲେ ବି ତା ପୁଅ କି ଝିଅ ନିଶ୍ଚୟ ରୋଜଗାର କରିବା ପାଇଁ ଯିବ । କାମର

ସେମିତ ବାଦବିଚାର ନାହିଁ । ଯେଉଁ କାମ ମିଳିଲା, ସେ କାମ କଲେ । ଆମେ ଦେଖିଛୁ ଖୁବ୍ ବଡ ବଡ ଲୋକଙ୍କ ପିଲାଏ ହୋଟେଲରେ ଚାକର କାମ କରନ୍ତି, ବାସନ ମାଜନ୍ତି, ଜଳଖିଆ ପରସନ୍ତି, କେଉଁଠି କେଉଁଠି ହୋଟେଲରେ ରୋଷେଇ ବା ଜଳଖିଆ ତିଆରି କରନ୍ତି । ବାପମାଙ୍କର ସମ୍ମାନରେ ବାଧା ଆସେ ନାହିଁ । ସେମାନଙ୍କର ଆହୁରି ଗର୍ବ ସେମାନଙ୍କ ପୁଅ ଝିଅମାନେ ରୋଜଗାର କରିବାର କ୍ଷମତା ହାସଲ କଲେଣି ।

କୌଣସି ପୁଅ କି ଝିଅ ପାଠ କଲେଜ ସ୍ତରରେ ନିଜେ ରୋଜଗାର ନ କରି ପଢ଼େ ତେବେ ସେ ତା ସାଙ୍ଗସାଥି ମେଳରେ ସମ୍ମାନ ହରାଏ । ରୋଜଗାର କରୁ ନ ଥିବା ପୁଅ କି ଝିଅକୁ ବିବାହ କରିବା ପାଇଁ କନ୍ୟା କି ବର ମିଳିବେ ନାହିଁ । ତାକୁ ସମସ୍ତେ ଆଳସ୍ୟ ପରାୟଣ କହି ଛିଛିକାର କରିବେ । କହିବେ ସେ ପରିଶ୍ରମ କାତର, କୁଡ଼ିଆ । ଥରେ ସେମାନଙ୍କର ଏମିତି ବଦନାମ ହୋଇଗଲେ ସେମାନଙ୍କ ପକ୍ଷରେ ସମାଜରେ ଚଳିବା କଷ୍ଟକର ହୋଇପଡ଼େ । ନିଜେ ରୋଜଗାର କରି ପଢ଼ୁଥିବାରୁ ମାର୍କିନ୍ ଛାତ୍ର ସମାଜରେ ଆମ ଦେଶର ଛାତ୍ର ସମାଜଭଳି ଏତେ ଧର୍ମଘଟ କି ଗୋଳମାଳ ନାହିଁ ।

ଆମେରିକା ସମାଜରେ ବିବାହ ପଦ୍ଧତି ମଧ୍ୟ ବିଚିତ୍ର ପ୍ରକାରର, ପୁଅ ଝିଅମାନେ ନିଜେ ନିଜେ ସେମାନଙ୍କ ପାତ୍ର ପାତ୍ରୀ ଠିକ୍ କରିବେ । ବାହାଘରରେ ଯା ଖରଚ ହେବ, ପୁଅ ଝିଅମାନେ ରୋଜଗାର କରି ସଞ୍ଚୟ କରିଥିବେ । ବିବାହ ଉ ଭୋଜିଭାତ ଖର୍ଚ୍ଚଠାରୁ ଆରମ୍ଭ କରି ଯାବତୀୟ ଖରଚ ସେମାନେ ନିଜେ ତୁଲାଇବେ । ବାପମାଙ୍କର ପଇସାଟିଏ ବି ଖର୍ଚ୍ଚ ହେବ ନାହିଁ । ବାହା-ଘରର ଯାନି ଯୌତୁକ କଥା କିଛି ନାହିଁ । ବାହାଘର ପରେ ଆମ ଦେଶର ଝିଅ ଯେମିତି ବଡ଼ା ହୋଇ ଶ୍ୱଶୁରଘରକୁ ଯାଏ ଓ ସେଠି

ତାର ନିଜ ସଂସାର ଗଢ଼ିଉଠେ, ସେହିଭଳି ମାର୍କିନ ପରିବାରରେ ପୁଅ ବିବାହ ପରେ ବାପମାଠାରୁ ଅଲଗା ହୋଇଯାଇ ଅନ୍ୟ ଏକ ସ୍ଥାନରେ ନିଜ ସଂସାର ଗଢ଼େ । ସେଥିପାଇଁ ପୁଅଝିଅମାନେ ବିବାହ ପୂର୍ବରୁ ସବୁକିଛି ବନ୍ଦୋବସ୍ତ କରି ସାରିଥାନ୍ତି । ବାପମାମାନେ କେବେ ପୁଅଝିଅଙ୍କ ସଂସାର ନେଇ ମୁଣ୍ଡ ଖେଳାନ୍ତି ନାହିଁ । ସେମାନଙ୍କ ଦେଶରେ ପୁଅବୋହୂ ବାପମାଠାରୁ ଯେମିତି ଅଲଗା ହୋଇଯାଆନ୍ତି ଆମ ଦେଶରେ ସେମିତି ହେଲେ କେତେ ଲୋକ କେତେ କ'ଣ କହନ୍ତେ ।

ଆମେରିକାର ଲୋକଙ୍କର ଗୋଟିଏ ସବୁଠାରୁ ଭଲ ଗୁଣ ହେଉଛି, ସେମାନେ ମୋଟେ ରକ୍ଷଣଶୀଳ ନୁହଁନ୍ତି । ରକ୍ଷଣଶୀଳତା କାହାକୁ କୁହାଯାଏ ସେମାନେ ଜାଣନ୍ତି ନାହିଁ । ସେଥିପାଇଁ ସେମାନଙ୍କ ସମାଜରେ ଚଳିବାକୁ ଆମକୁ କିଛି ଅସୁବିଧା ହେଲାନି । ଖାଇବାଠାରୁ ଆରମ୍ଭ କରି କଥାବାର୍ତ୍ତା ପର୍ଯ୍ୟନ୍ତ କୌଣସିଥିରେ ବିଶେଷ ଆଦବ୍‌କାଇଦା ମାନି ଚଳିବାକୁ ପଡ଼େନି । ଇଂଲଣ୍ଡର ଲୋକଙ୍କର ସେମାନେ ଏଦୃଷ୍ଟିରୁ ଓଲଟା କହିଲେ ଅତ୍ୟୁକ୍ତି ହେବନି । ଆମେରିକାନ୍‌ମାନେ ସାଧାରଣତଃ କଣ୍ଟା ଚାମୁଚରେ ଖାଆନ୍ତି । ଇଂରେଜଙ୍କ ମେଳରେ ଯଦି ଜଣେ ଆମେରିକାନ୍ ଖାଏ, ତେବେ ସେ ତା ଖାଇବା ଆଦବ୍ କାଇଦା ନ ମାନି ଇଂରେଜଙ୍କ ଭଳି ହାତରେ ଖାଇ ବସିବ । କିନ୍ତୁ ଇଂରେଜ ଲୋକେ ମାରି ପକାଇଲେବି ତା' କରିବେ ନି । ସେମାନେ ସମସ୍ତେ ବସି ଖାଉଥିବାବେଳେ ଯଦି ଜଣେ ହାତରେ ଖାଇ ପକାଇଲେ ତେବେ ସବୁ ଅଶୁଦ୍ଧ ହୋଇଗଲା । ବେଳେବେଳେ କେତେକ ଅପମାନିତ ମନେ କରି ଖାଇବା ଛାଡ଼ି ଉଠିଯିବେ । ଜଣେ ଇଂରେଜ ଭଦ୍ରଲୋକ ତୁମକୁ ତାଙ୍କ ଘରକୁ ଡ଼ିନର ଖାଇବା ପାଇଁ ନିମନ୍ତ୍ରଣ କଲେ, ତୁମେ

ଯଦି ଉପଯୁକ୍ତ ପୋଷାକ ନ ପିନ୍ଧି ଗଲ, ତେବେ ଅତିଥି ସତ୍କାରକ ଅପମାନିତ ବୋଧ କରିବେ । ଯଦି ସେ ଠିକଏ କର୍ତ୍ତା ପ୍ରକୃତିର ଲୋକ ହୋଇଥାନ୍ତି । ତେବେ ତୁମକୁ ଖାଇବାକୁ ନ ଦେଇ ଫେରାଇ ଦେଇ ପାରନ୍ତି । କିନ୍ତୁ ଆମେରିକା ଲୋକଙ୍କଠାରେ ଏମିତି ପ୍ରକୃତି ପାଇବ ନି । ଇଂରେଜମାନଙ୍କ ଭଳି ପୋଷାକ ପରରେ ସେମାନଙ୍କର ସେମିତି କିଛି ବାଦ ବିଚାର ନାହିଁ । ଯେ କୌଣସି ପୋଷାକ ପିନ୍ଧି ଅଫିସକୁ ବାହାରି ପଡ଼ିବେ କି ବଡ଼ ଅଫିସର ସହିତ ସାକ୍ଷାତ କରିବାକୁ ଚାଲିଯିବେ । ସୁଟ୍ କି ଫୋରପିସ ସୁଟ୍‌ର ଆବଶ୍ୟକତା ନାହିଁ । ବନ୍ଧୁ ଘରକୁ ଯିବା କଥା, ଯେ କୌଣସି ପୋଷାକଟାଏ ପିନ୍ଧିକରି ଚାଲିଯିବେ । ଇଂରେଜମାନଙ୍କ ରକ୍ଷଣଶୀଳତା ପାଖ ସେମାନେ ମାଡ଼ନ୍ତି ନି ।

ଇଂରେଜମାନଙ୍କର ରକ୍ଷଣଶୀଳତାର ଏକ ଉଦାହରଣ ଅତି ଆମୋଦଜନକ । ଏହି ଗପଟିରୁ ସେମାନେ କେତେ ରକ୍ଷଣ-ଶୀଳ ଜାଣିହେବ । ଆମ ଦେଶରେ ଚା ପ୍ଲେଟରେ ବା କପ୍‌ରେ ଦିଆଯାଏ ଓ କପ୍‌ଟି ସସର ଉପରେ ଥୁଆ ହୋଇଥାଏ । ଆମ ଦେଶର ବହୁ ଲୋକ କପ୍‌ରୁ ଚା ଢାଳି ସସରରେ ଥଣ୍ଡା କରି ପିଅନ୍ତି । ଏଇଟା ବିଲାତ ଆମେରିକାରେ ଘୋର ନିନ୍ଦଣୀୟ କଥା । ସେ ଦେଶରେ କେହି ଏମିତି ସସରରେ ଢାଳି ପିଅନ୍ତି ନି । ଥରେ ବିଲାତରେ ଗୋଟିଏ ଚା ହୋଟେଲରେ ବହୁ ରକ୍ଷଣଶୀଳ ସ୍ତ୍ରୀ ପୁରୁଷ ବସି ଖାଉଥିଲେ । ସେଥି ଭିତରେ ଜଣେ ଭାରତୀୟ ଥିଲେ । ସମସ୍ତେ ଚା ପିଇଲେ । ଭାରତୀୟ ଭଦ୍ରଲୋକ ଜଣକ ନିଜ ଚା ପିଇବା ରୀତିରେ ଚା'କୁ କପ୍‌ରୁ ଢାଳି ସସରରେ ଫୁଙ୍କି ଥଣ୍ଡା କରି ପିଇଲେ । ତାଙ୍କ ନିକଟରେ ଜଣେ ଅତି ରକ୍ଷଣଶୀଳ ଇଂରେଜ ଭଦ୍ରମହିଳା ବସିଥିଲେ । ସେ ଏ ଭଦ୍ର ଲୋକଙ୍କ କାଣ୍ଡ ଦେଖି ଏତେ ଆଶ୍ଚର୍ଯ୍ୟ

ହୋଇଗଲେ ଯେ ସେ ଚେୟାରରେ ବସୁ ବସୁ ଅଚେତ୍ ହୋଇ ଢଳି ପଡ଼ିଲେ । କୌଣସି ଜଣେ ଭଦ୍ରଲୋକ ଏମିତି ଏକ ନିଜନ୍ନୁଣା କାମ କରିପାରେ, ତାଙ୍କର ଧାରଣା ବାହାରେ । ତାଙ୍କୁ ନେଇ ପାଣି ଛିଟା ଛିଟି କରି ପଚାରିଲାରୁ ସେ ଏଣ୍ଟ ଖାରଷ୍ଟାପ୍ତ ଭଦ୍ରଲୋକଙ୍କ ଖାଇବା ରୀତିକୁ ସହ୍ୟକରି ନ ପାରି ଅଚେତ୍ ହୋଇ ପଡ଼ିଲେ ବୋଲି କହିଲେ । ଏଇ ହେଉଛି ଇଂରେଜ ଲୋକଙ୍କ ଆଦବ୍‌କାଏଦା । ଅବଶ୍ୟ ଆମେରିକାନ୍‌ମାନେ ଏମିତି ନୁହଁନ୍ତି । ସେମାନେ ଏହାଠାରୁ ଢେର ଦୂରରେ ।

*

# ଚତୁର୍ଥ ଅଧ୍ୟାୟ

# ଆମେରିକା ଲୋକଙ୍କ ଘରକରଣା ଓ ଧନସମ୍ପଦ

ଆମ ଦେଶରେ ଘରକରଣା ଧନସମ୍ପଦ କହିଲେ କ'ଣ ବୁଝାଏ ? କାର କେତେ ସୁନା ଗହଣା ଅଛି, କାର କେତେ ଟଙ୍କା, ଘର ଜମି ଅଛି ଏଇ ତ ? କିନ୍ତୁ ଆମେରିକାର ଲୋକଙ୍କ ଘରକରଣା ଧନ ସମ୍ପଦ ଅଲଗା । ସାଧାରଣ ଆମେରିକାନ ଘରେ ଘରକରଣାକୁ ଧନ ସମ୍ପଦ କହିଲେ ଏହା ଅଲଗା ଜିନିଷକୁ ବୁଝାଏ । ଆମେରିକାନ୍‌ମାନେ ଯାହା ଆୟ କରନ୍ତି ତାକୁ ବେଶ୍ ମଉଜରେ ଖର୍ଚ୍ଚ କରନ୍ତି । ଆମ ଦେଶ ଭଳି ଜମି, ବାଡ଼ି, ଗହଣାଗାଣ୍ଠି ବନ୍ଧା ଛନ୍ଦାରେ ପଇସା ବିଶେଷ ଖଟାନ୍ତି ନାହିଁ ବା ଖଟାଇବାକୁ ଆଗ୍ରହ ଦେଖାନ୍ତି ନାହିଁ । ଜଣେ ସାଧାରଣ ଶ୍ରମିକ ହାଗ୍ରହାର ମାସକୁ ରୋଜଗାର କରେ ଆମ ଟଙ୍କାରେ ଦୁଇ ହଜାର ଟଙ୍କା । ଏଇ ହେଲା ଆମେରିକାରେ ସବୁଠାରୁ କମ୍ ରୋଜଗାର । ସେମାନେ ଏନ୍ତ ଯେଉଁ ଟଙ୍କା ରୋଜଗାର କରନ୍ତି, ନିଜର ସୁଖ ସୁବିଧା, ଆନନ୍ଦ ଉପଭୋଗ କରିବାରେ ଖର୍ଚ୍ଚ କରି ଦିଅନ୍ତି । ସେମାନଙ୍କର ଘର କରଣା ବୋଇଲେ ତାର କେମିତି ଘର, ଘରସଜ୍ଜା, ବାଡ଼ି ବଗିଚା, ପୋଷାକ ପରିଚ୍ଛଦ, ଘରେ ନାନାଦି ଯନ୍ତ୍ରପାତିର ବ୍ୟବସ୍ଥା,

ଯିବା ଆସିବାପାଇଁ ମଟର ଗାଡ଼ି, ଆମୋଦ ପ୍ରମୋଦ ପାଇଁ ରେଡ଼ିଓ ଟେଲିଭିଜନ୍ ଆଦିକୁ ବୁଝାଏ । ସ୍ୱଚ୍ଛନ୍ଦରେ ଚଳିବାପାଇଁ ବିଭିନ୍ନ ଯନ୍ତ୍ରପାତି ଆଗ । ଘର କରଣା ଭିତରେ ସେଇଟା ହେଲା ସବା ଆଗ । ଘରର ବିଭିନ୍ନ ସଜାସଜ, ଯାକଜମକରେ ଚଳାଚଳ ଘର କରଣାର ଦ୍ୱିତୀୟ ଅଙ୍ଗ । ବାହାରକୁ ଗଲେ ଭଲ ଭଲ ମଟର ଗାଡ଼ି, ଦାମିକା ଦାମିକା ପୋଷାକ ପରିଚ୍ଛଦ ହେଲା ଘରକରଣାର ତୃତୀୟ ଅଙ୍ଗ । ସୁନ୍ଦର ସୁନ୍ଦର ବାହାରକୁ ଦିଶିବା ଘର, ଭଲ ଭଲ ବାଡ଼ି ବଗିଚ୍ଚ ନ ହେଲେ ସେମାନଙ୍କର ଘରକରଣା ମନମୁତାବକ ହୁଏ ନି । ଆମେରିକା ଲୋକଙ୍କ ଘର କରଣା, ଧନ ସମ୍ପଦ ଯା' କୁହ ସବୁ ହେଲା ଏହି । ସେମାନେ ଯେତେ ଆୟ କଲେ ଖାଇବା ପିନ୍ଧିବା ବ'ଞ୍ଚିବ ସବୁ କିଛି ଏଇଥିରେ ଖଟାଇଲେ । ଜଣେ ସାଧାରଣ ଆମେରିକାନ୍‌ର ଘରକୁ ପଶିଯିବ, ତା ଘରର ସଜାସଜ ଦେଖିଲେ ପେଟ ପୁରିଯିବ । ଏମିତି ଘର ସଜ ଆମ ଦେଶର ଖୁବ୍ ଧନୀ ଲୋକର ବି ନ ଥିବ । ଆମେରିକାର ଜଣେ ସାଧାରଣ ଶ୍ରମିକର ଘରସଜା ଆମ ଦେଶର ଜଣେ ବଡ଼ ଅଫିସରର ଘର ସଜାଠାରୁ ବେଶ ଭଲ । ଏହି ଘର କରଣା ଓ ଘର ସଜାଇବା ମୂଳରେ ରହିଛି ଆମେରିକାର ନଗ୍ନ ସମାଜ । ପ୍ରତ୍ୟେକ ଜିନିଷକୁ ସୁନ୍ଦର କରି ସଜାଇବାରେ ସେମାନଙ୍କ ଆହ୍ଲାଦ ଏତେ ବେଶି ଯେ ସେମାନେ ଦିନରାତି ସେମାନଙ୍କ ଘରକୁ ସୁନ୍ଦର କରିବାରେ ଲାଗିଥାନ୍ତି । ପିଲମାନଙ୍କୁ ସେମାନେ ଶିକ୍ଷା ଦେଇ ଏମିତି ତାଲିମ କରିଥାନ୍ତି, ଯେ ସେମାନେ ଘରେ କେବେ ଅଳିଆ କରିବେ ନି । ଆମ ପିଲଙ୍କ କଥା ଗୁଡ଼ି । ମା ଘର ଓଳାଇ ଦେଇ ଚାଲିଗଲା, ପୁଅ କି ଝିଅ ବାଲି ମାଟି ଆଣି ଘର କରି ଖେଳିଲେ । ଆମେରିକା ପିଲମାନଙ୍କର ପରିଷ୍କାର ପରିଚ୍ଛନ୍ନ

ଜ୍ଞାନ ଯେତେ, ଆମ ପିଲାଙ୍କ କଥା ଛାଡ଼, ଆମ ବଡ଼ ମଣିଷଙ୍କର ବି ସେ ଜ୍ଞାନ ନାହିଁ ।

ଆମେରିକା ଲୋକଙ୍କ ହାଣ୍ଡିଶାଳ ଦେଖିବା କଥା । କେତେ ପରିଷ୍କାର ପରିଚ୍ଛନ୍ନ ସେମାନଙ୍କ ହାଣ୍ଡିଶାଳ । ଦେଖିଲେ 'ହାଣ୍ଡିଶାଳ' ବୋଲି ଧାରଣା ଆସିବନି । ସେମାନଙ୍କ ପାଇଖାନା ଓ ଗାଧୁଆ ଘର କଥା ଛାଡ଼ । ସେମିତେଟେରି ପାଇଖାନା, କମୋଡ଼ ଲଗିଥାଏ । ଝାଡ଼ା ଫେରି ଚେନ୍ ଟାଣିଦେଲେ ଝାଡ଼ା କୁଆଡ଼େ ଚାଲିଗଲା ! ଗାଧୁଆ ଘର ନ ଗନ୍ଧାଇବା ପାଇଁ କେତେ ପ୍ରକାର ଔଷଧ ପକାଇବା ବନ୍ଦୋବସ୍ତ ଅଛି । ସେଗୁଡ଼ିକୁ କୁହାଯାଏ ଡିଓଡ଼ରେଣ୍ଟ । ଏହି ଔଷଧ ପକାଇଲେ ପାଇଖାନା ଦୁର୍ଗନ୍ଧକୁ ଦୂରକରି ଗାଧୁଆ ଘରକୁ ସୁଗନ୍ଧରେ ମହକାଇ ଦେଇ ଥାଏ । ଗାଧୁଆ ଘରେ ଯେଉଁ ଗାଲିଚା ପଡ଼ିଛି, ଦେଖିଲେ ଆଖିରୁ ପଟି ଖୋଲିଯିବ । ଗାଧୋଇବା ପାଇଁ ପ୍ରକାଣ୍ଡ ଗାଧୁଆ କୁଣ୍ଡ । ପୁରାପୁରି ସେହି କୁଣ୍ଡରେ ଶୋଇଯାଇ ଗାଧୋଇ ହେବ । ଗାଧୋଇବା ପୂର୍ବରୁ କୁଣ୍ଡକୁ ଥଣ୍ଡା ପାଣି କିମ୍ବା ଗରମ ପାଣିରେ ନିଜ ଇଚ୍ଛା ମୁତାବକ ପୂରାଇ ଦିଅ । ତାପରେ ତା ଭିତରେ ପଶି ଗାଧୁଅ । ସାବୁନ ଆଦି ଲଗାଇ ଦେହକୁ ପରିଷ୍କାର ସେ ଭିତରେ କରିବ । ଯଦି ଝର ଝର ପାଣିରେ ଗାଧୋଇବାକୁ ଇଚ୍ଛା ଝରଣା ପାଇପକୁ ଖୋଲିଦିଅ । ଗାଧୋଇସାରି ମଇଳା ପାଣି ବାହାର କରିଦିଅ । ଗାଧୁଆକୁଣ୍ଡ ଯଦି ମଇଳା ହୋଇଗଲା ତେବେ ଆଉ ଏକ ଔଷଧ ଆଣି ତା ଉପରେ ପକାଇଦିଅ । କୁଣ୍ଡ ପରିଷ୍କାର ହୋଇ ନୂଆ ଭଳି ଝଟକିବ । ଝାଡ଼ାଫେରା କୁଣ୍ଡରେ ସେମିତି ଔଷଧ ପକାଅ, ସବୁ ପରିଷ୍କାର ହୋଇ ଝଟକିବ ଠିକ୍ ନୂଆକୁଣ୍ଡ ଭଳି । ସେମିତି ମଧ୍ୟ ମୁହଁ ଧୁଆ ବେସିନ । ଏଗୁଡ଼ିକୁ ସଫା କରିବା

ପାଇଁ ମେହେନ୍ତରର ଦରକାର ନାହିଁ । ନିଜ ପ୍ରାତଃକର୍ମ ସାରିଲା, ନିଜେ ସଫା କରିଦେବ । କେଉଁଠି ହାତ ଲଗିବା ଦରକାରନାହିଁ । ସବୁ ମନକୁ ମନ ସଫା ହୋଇଗଲା । ଦାନ୍ତ ଘଷିଲାବେଳେ ମୁହଁ ଧୋଇଲାବେଳେ ନିଜ ଦାନ୍ତ ମୁହଁକୁ ଦେଖିଲା ଭଳି ବଡ଼ବଡ଼ ଆରସି ଲଗିଥିବ ଗାଧୁଆ ଘରେ, ଗାଧୋଇ ସାରି ନିଜ ଦେହକୁ ମଧ୍ୟ ଦେଖି ପାର । ଦେହ କେମିତି ପରିଷ୍କାର ପରିଚ୍ଛନ୍ନ ହେଲା. ସବୁ ନିଜେ ଦେଖି ପାରିବ । ସେହି ଗାଧୁଆ ଘରେ ନାନା ପ୍ରକାରର ପୋଷାକପତ୍ର ଥୁଆ ହୋଇଛି । ଗାଧୋଇସାରି ପୋଷାକପତ୍ର ପିନ୍ଧି ବାହାରି ଆସିଲ । ଦେହରେ ପାଉଡ଼ର, ଡ଼ିଓଡ୍ରେରାଣ୍ଟ ଆଦି ଯାହା ଲଗାଇବା କଥା ସବୁ ଗାଧୁଆ ଘରେ ଥାଏ । ଥରେ ଗାଧୁଆ ଘରକୁ ପଶିଲତ ଝାଡ଼ା ଫେରି, ଦାନ୍ତଘଷା, କ୍ଷୌର ହେବା, ଗାଧୁଆ, ପୋଷାକପତ୍ର ପିନ୍ଧା, ପାଉଡ଼ର ଆଦି ଲଗା ସବୁ କାମ ଶେଷ କରି ଫିଟ୍‌ଫାଟ ହୋଇ ବାହାରି ଆସିଲ । ଆମ ଦେଶରେ ପାଇଖାନା କି ଗାଧୁଆଘର କହିଲେ ଯେଉଁ ଗନ୍ଧ ବାହାରୁଥିବା ଘରକୁ ବୁଝାଏ, ସେମିତି ଆମେରିକାରେ ପାଇବ ନି । ଗାଧୁଆ ଘରର କାନ୍ଥ, ଛାତଠାରୁ ଆରମ୍ଭ କରି ଚଟାଣ ପର୍ଯ୍ୟନ୍ତ ଭାରି ସୁନ୍ଦର ଭାବରେ ସଜା ହୋଇଥାଏ । ଗାଧୁଆ ଘରର ଗାଲିଚ୍ଚ ଏତେ ମୂଲ୍ୟବାନ୍ ଯେ ଆମ ଦେଶର ଧନୀ ଲୋକଙ୍କର ଡ୍ରଇଂ ରୁମରେ ଏମିତି ଗାଲିଚ୍ଚ ପଡ଼ି ନ ଥିବ । ଗାଧୁଆ ଘରର ସଜାସଜି କାମ ସବୁ ଗୃହିଣୀମାନଙ୍କର ।

ଯେଉଁ ଦେଶର ଲୋକମାନଙ୍କର ହାଣ୍ଡିଶାଳ ଓ ଗାଧୁଆଘର ଏତେ ସୁନ୍ଦର, ସେମାନଙ୍କର ଡ୍ରଇଂ ରୁମର ସାଜସଜ୍ଜା କେମିତି ହୋଇଥିବ, ନ କହିଲେ ମଧ୍ୟ ଅନେକେ ଧାରଣା କରି ପାରୁଥିବେ । ଆମେରିକାର କି ଧନୀ, କି ଗରିବ ସମସ୍ତଙ୍କ ଡ୍ରଇଂରୁମରେ ସୋଫା-ସେଟ୍ ପାଇବ । ଧନୀ ଲୋକର ସୋଫାସେଟ୍ ମୂଲ୍ୟବାନ୍‌ତ ଗରିବ

ଲୋକର ସୋଫାସେଟ୍ ଅଳ୍ପ ମୂଲ୍ୟର । ପ୍ରତ୍ୟେକଙ୍କ ଘରେ ଟେଲି-ଭିଜନ୍ ସେଟ୍ । ଧନୀ ଲୋକଙ୍କ ଘରେ ମୂଲ୍ୟବାନ ରଙ୍ଗୀନ ଟେଲି-ଭିଜନ୍ ସେଟ୍ ତ ଗରିବ ଲୋକଙ୍କ ଘରେ ଅଳ୍ପ ଦାମିକା କଳା ଧଳା ଟେଲିଭିଜନ୍ ସେଟ୍ । ତାଛଡ଼ା ପ୍ରତ୍ୟେକଙ୍କ ଘରେ ଗୋଟାଏ ରେଡ଼ିଓ ଗ୍ରାମୋଫୋନ କି ରେଡ଼ିଓଗ୍ରାମ୍ ନିଶ୍ଚୟ ପାଇବ । ଆମୋଦ ପ୍ରମୋଦ ପାଇଁ ଏଗୁଡ଼ାକ ନିହାତି ଦରକାର । କା'ର ରେଡ଼ିଓ କି ଗ୍ରାମୋ-ଫୋନ ଖୁବ୍ ଦାମିକା ତ କାହାର ଶସ୍ତାଧରଣର । ଯେଉଁମାନଙ୍କର ଘରକରଣା ଝୁଙ୍କ୍ ଖୁବ୍ ବେଶି, ସେମାନେ ଦାମିକା ଦାମିକା ଜିନିଷ ପାଇଁ ଆଗ୍ରହ ପ୍ରକାଶ କରନ୍ତି । କା ଘରେ ରେଡ଼ିଓ ଗ୍ରାମ ଷ୍ଟେରିଓ-ଫୋନିକ୍ ତ କାହା ଘରେ ରେଡ଼ିଓଗ୍ରାମରେ ଆଠଟା ଲାଉଡ୍‌ସ୍ପିକର ଲାଗିଛି ତ କାହାଘରେ ମାତ୍ର ଗୋଟିଏ ଲାଉଡ୍‌ସ୍ପିକର । ଏଇହେଲା ସେମାନଙ୍କର ଘର କରଣା । ଯିଏ ଯେତେ ଆଧୁନିକ ଧରଣର ଏସବୁ ଯନ୍ତ୍ର ସବୁ ରଖି ପାରିବ, ସେ ସେତେ ଖୁସି । ସମାଜରେ ତା ସ୍ଥାନ ସେତେ ଉପରେ । ଆମ ଦେଶରେ ଯେମିତି ଗହଣା ଗାଣ୍ଠିରେ ସ୍ତ୍ରୀଲୋକମାନଙ୍କ ଭିତରେ ପ୍ରତିଯୋଗିତା, ଅଜି ଇଏ ଯଦି ଅମୁକେର ଗହଣାଟାଏ ଲଗାଇଲାଣି ସେ ଆଉ ଏକ ଗହଣା ଲଗାଇଲାଣି । ସେଠି ପ୍ରତିଯୋଗିତା ହେଲା ଘରକରଣାରେ, ଗହଣା ପିନ୍ଧାରେ ନୁହେଁ କି ଶାଢ଼ୀ ପିନ୍ଧାରେ ନୁହେଁ ।

ଆମେରିକାରେ ପ୍ରତ୍ୟେକଙ୍କ ଘରେ ଟେଲିଫୋନ୍ । ଟେଲିଫୋନ୍‌ଟାଏ ନ ହେଲେ ନ ଚଳେ । ଆମେରିକାରେ ଏମିତି ଗୋଟାଏ ଘର ପାଇବ ନି ଯେଉଁ ଘରକୁ ଟେଲିଫୋନ୍ ଲାଗି ନ ଥିବ । କୌଣସି ଗୋଟାଏ ଜିନିଷ କିଣିବା ଦରକାର କେଉଁଠି ମିଳିବ, କେଉଁଠି କେତେ ଦାମ୍, ସେ ସବୁର ଠିକଣାଖି ଖବର ଆମେରିକାର ଗୃହିଣୀ ଆଖି ପିଛୁଳାକେ ସଂଗ୍ରହ କରେ, ଏହି ଟେଲିଫୋନ୍

ସାହାଯ୍ୟରେ । ଘରେ କିଛି ଗୋଟାଏ ମରାମତି କରିବାକୁ ପଡ଼ିବ, ମିସ୍ତ୍ରୀକୁ ଡକାଯିବ ଏହି ଟେଲିଫୋନ୍‌ରେ । କାହା ଘରକୁ ବୁଲି ଯିବାକୁ ଇଚ୍ଛା ହେଲେ ଟେଲିଫୋନ୍ ସାହାଯ୍ୟରେ ଆଗ ତାକୁ ଜଣାଇ ତା’ ଘରକୁ ଯିବ । ଟେଲିଫୋନ୍‌ର ଆବଶ୍ୟକତା ସେ ଦେଶରେ ଏତେ ବେଶୀ ଯେ ଟେଲିଫୋନ୍ ନ ହେଲେ ମୁହୂର୍ତ୍ତଟାଏ ଚଳି ହେବ ନି । ଆମେରିକାରେ ଏହି ଟେଲିଫୋନ୍ ସହିତ ଆମେ ଏତେ ଅଭ୍ୟସ୍ତ ହୋଇ ପଡ଼ିଥିଲୁଁ ଯେ ଭାରତକୁ ଫେରି ଆସି ଆମେ ଟେଲିଫୋନ୍‌ର ଅଭାବ ସବୁଠାରୁ ବେଶି ଉପଲବ୍‌ଧି କଲୁଁ ।

ସେ ଦେଶରେ ଡ୍ରଇଂରୁମକୁ କହନ୍ତି ଲିଭିଙ୍ଗ୍‌ରୁମ । ଲିଭିଙ୍ଗ୍-ରୁମ୍‌କୁ ସଜାଇଲାବେଳେ ସେମାନେ ନାନା କଥାକୁ ଦୃଷ୍ଟି ଦିଅନ୍ତି । ଝରକାର ସ୍କ୍ରିନ୍‌ଠାରୁ ଆରମ୍ଭ କରି ଘରର ଆଲୁଅବତୀ ପର୍ଯ୍ୟନ୍ତ ସବୁଥିରେ କିଛି କିଛି ବିଶେଷତ୍ୱ । ସ୍କ୍ରିନ୍‌ଗୁଡ଼ିକ କେତେ କେତେ ପ୍ରକାର । ନାଇଲନ୍, ଟେରିଲିନଠାରୁ ଆରମ୍ଭ କରି କାଚସୂତା ପର୍ଯ୍ୟନ୍ତ ବିଭିନ୍ନ ପଦାର୍ଥରୁ ତିଆରି ସ୍କ୍ରିନ୍ ସେ ଦେଶରେ ବ୍ୟବହୃତ ହେବାର ଦେଖାଯାଏ । ଯାହାକୁ ଯେଉଁ ସ୍କ୍ରିନ୍ ଭଲ ଲାଗିଲା, ସେ ସେହିସ୍କ୍ରିନ୍ ବ୍ୟବହାର କଲା । ଆମେରିକାରେ କାଚ ସୂତାରୁ ତିଆରି ସ୍କ୍ରିନ୍ ସହିତ ଆମେ ପରିଚିତ ହେଲୁଁ ଆମେରିକାରେ ପହଞ୍ଚିବାର ଅଳ୍ପ କେଇଦିନ ପରେ । ଖାଲି ସେତିକି ନୁହେଁ, ସେ ଦେଶରେ କାଚରୁ ତିଆରି ପୋଷାକ ଓ ଲୁଗାପଟା ମଧ୍ୟ ବ୍ୟବହୃତ ହେବାର ଦେଖି ଆଶ୍ଚର୍ଯ୍ୟ ନ ହୋଇ ରହି ପାରିଲୁ ନି ।

---

## ପଞ୍ଚମ ଅଧ୍ୟାୟ

# କାଚରୁ ତିଆରି ପୋଷାକ ଓ ଲୁଗାପଟା

କାଚ କପରି ଭଙ୍ଗପ୍ରବଣ, ତାହା ସମସ୍ତେ ଜାଣନ୍ତି । ହାତରୁ କାଚ ଗିଲାସଟିଏ ତଳେ ଖସି ପଡ଼ିଲେ ଏହା କପରି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଯାଏ, ତା କିଏ ନ ଜାଣେ ? କାଚ ଜିନିଷ ଭଗ୍ନ-ପ୍ରବଣତା ପାଇଁ ପ୍ରସିଦ୍ଧ । ଏତେ ଭଗ୍ନପ୍ରବଣ ଏହି କାଚରୁ ଯେ ତୁଳା, ପଶମ, ରେଶମରୁ ତିଆରି ପୋଷାକଭଳି ନରମ ମସୃଣ ପୋଷାକ ତିଆରି ହୋଇପାରିବ, ଏହା ଧାରଣା କରିବା ସେତେ ସହଜ ନୁହେଁ ।

ଆମେରିକାକୁ ଆସିବା ପୂର୍ବରୁ କାଚରୁ ତିଆରି ପୋଷାକ କଥା ନାନା ବହିରେ ପଢ଼ିଥିଲେ ହେଁ କାଚରୁ ତିଆରି ପୋଷାକ ପ୍ରକୃତରେ କିଭଳି ହୋଇଥିବ ସେ ଧାରଣା ଆମର କାହାରି ନ ଥିଲା । ନାନାପ୍ରକାର ଫଟୋ ଓ ଚିତ୍ରରେ ଏହି କାଚ ତିଆରି ପୋଷାକପତ୍ର, ଲୁଗାପଟା ଦେଖିଥିଲେ ହେଁ ଏହା ହାତକୁ ବା ଦେହକୁ କେମିତି ଲାଗୁଥିବ, କପା, ପଶମ କିମ୍ବା ରେଶମ ପୋଷାକ ଭଳି ନରମ କି ନୁହେଁ, ଜାଣିବାର ସୌଭାଗ୍ୟ ଆମର କେବେ ଜମା ନ ଥିଲା । ରେଭେନ୍‌ସା କଲେଜରେ ଗବେଷଣା କରିବା

ସମୟରେ ଡକ୍ଟର ମହାପାତ୍ର ଏବଂ କାଚରୁ ତିଆରି ତୁଳା, କାଚ ସୂତାରୁ ତିଆରି ଜାଲ ଓ ଫିତା ସମ୍ପର୍କରେ ଆସିଥିଲେ ହେଁ କାଚ ପୋଷାକ ସମ୍ପର୍କୀୟ ପ୍ରକୃତ ଧାରଣା ଆମେରିକା ନ ଆସିବା ପର୍ଯ୍ୟନ୍ତ ତାଙ୍କର କି ମୋର କାହାରି ହୋଇ ନ ଥିଲା ।

ଆମେରିକାରେ ପହଞ୍ଚି ଆମେ ଯେତେବେଳେ ଆମ ନୂଆ ଭଡ଼ାଘରେ ରହିଲୁ, ସେତେବେଳେ ଆମ ଘରର ଝରକା, ଦୁଆର ଆଦିରେ କାଚ ସୂତାରୁ ତିଆରି ପରଦା ଲଗାଇବାକୁ ସ୍ଥିର କଲୁ । କାଚ ସୂତାରୁ ତିଆରି ଝରକା ଓ ଦରଜା ସ୍କ୍ରିନ୍ ଦେଖିଲାରୁ ପ୍ରଥମେ ବିଶ୍ୱାସ କରି ହେଲାନି ସେଗୁଡ଼ିକ କାଚରୁ ତିଆରି ବୋଲି । ସେଗୁଡ଼ିକ ଦେଖିବାକୁ ସିଲ୍କ ଲୁଗା ଭଳି ଚକ୍ ଚକ୍ ନରମ, କାଚର କିଛି ଚିହ୍ନ ସେଠାରେ ନାହିଁ । ଆମେ ଯେଉଁଦିନ ସ୍କ୍ରିନ୍ କିଣିବାକୁ ଓ୍ୱାଲ୍‌ଥାମ୍‌ର ସୁପ୍ରସିଦ୍ଧ ଗ୍ରୋଭର କ୍ରୋନିନ୍ ଦୋକାନରେ ପହଞ୍ଚି କାଚସୂତାରୁ ତିଆରି ସ୍କ୍ରିନ୍ ଦେଖିଲୁ, ସେହିଦିନ ଆମର ପୂର୍ବ ଧାରଣା ବଦଳିଗଲା ।

ଗ୍ରୋଭର କ୍ରୋନିନ୍ ଦୋକାନରେ ଧାଡ଼ି ଧାଡ଼ି ହୋଇ ବହୁ ରକମର ସ୍କ୍ରିନ୍ ଥୁଆ ହୋଇଥାଏ । କପା ସୂତା, ରେଶମ, କୃତ୍ରିମ ରେଶମ, ନାଇଲନ୍, ଡ଼େକ୍ରନରୁ ତିଆରି କେତେ ଜାତିର ସ୍କ୍ରିନ୍ । ପରେ ଆମେ ଯେତେବେଳେ କାଚ ସୂତାରୁ ତିଆରି ସ୍କ୍ରିନ୍ ଦେଖିବାକୁ ଗଲୁ, କାଚସୂତା ସ୍କ୍ରିନ୍‌କୁ ଦେଖି ଆମେ ହଠାତ୍ ବିଶ୍ୱାସ କରି ପାରିଲୁନି । କାଚସୂତା ସ୍କ୍ରିନ୍ ଦେଖିବାକୁ ଅବିକଳ ରେଶମ ସ୍କ୍ରିନ ଭଳି । ସ୍କ୍ରିନ୍ ଉପରେ କି ସୁନ୍ଦର ପ୍ରିଣ୍ଟ ହୋଇଛି ! ନାନାପ୍ରକାର ଡ଼ିଜାଇନ୍ । ହାତକୁ ରେଶମ ସ୍କ୍ରିନ୍ ଭଳି ନରମ ଓ ମସୃଣ ଲାଗୁଥାଏ । କିଏବା ସହଜରେ ବିଶ୍ୱାସ କରିବ ଏହା କାଚରୁ

ତିଆରି ହୋଇଛି ବୋଲି ? ସେଠି ଯେତେ ପ୍ରକାର ସ୍କ୍ରିନ୍ ଥିଲି ସେ ସବୁ ଭିତରେ କାଚସୂତା ସ୍କ୍ରିନ୍ ସବୁଠାରୁ ମୂଲ୍ୟବାନ। ଆମ ଦେଶର ସାଧାରଣ ଗୋଟିଏ ଝରକା ମାପର ସ୍କ୍ରିନ୍ ଟିଏ କିଣିଲେ ତା ଦାମ ହେବ ପ୍ରାୟ ତିରିଶ ଟଙ୍କା । ତା'ଠାରୁ ମୂଲ୍ୟବାନ କାଚ ସ୍କ୍ରିନ୍ ମଧ୍ୟ ଅଛି; କିନ୍ତୁ ଆମେ ସେହି ତିରିଶ ଟଙ୍କିଆ ସ୍କ୍ରିନ୍ କିଣିଲୁ । ଏହି ସ୍କ୍ରିନ୍ ଉପରେ ବିଶ୍ୱାସ ଜନ୍ମାଇବା ପାଇଁ ଘରେ ପହଞ୍ଚି ସେହି ସ୍କ୍ରିନ୍‌ରୁ ସୂତାଖିଏ କାଢ଼ି ଦିଆସିଲି ଜଳାଇ ତାକୁ ପୋଡ଼ିବାକୁ ଚେଷ୍ଟା କଲି । ସୂତାରେ ମୋଟେ ନିଆଁ ଧରିଲାନି। ସ୍କ୍ରିନ୍ ଯଦି କପା କି ରେଶମ କି ନାଇଲନରୁ ତିଆରି ହୋଇଥାନ୍ତା, ତାହା କଣ ନ ଜଳି ରହିଥାନ୍ତା ? କାଗଜ ଜଳାଇ ନିଆଁ କରି ସେଥିରେ ସ୍କ୍ରିନ୍‌କୁ ପୋଡିବାକୁ ଚେଷ୍ଟା କଲି, ତଥାପି ବି ନିଆଁ ଧରିଲାନି । ସେହିଠାରୁ ମୋର ପୂର୍ଣ୍ଣବିଶ୍ୱାସ ହେଲା ଯେ ଆମ ଝରକା ସ୍କ୍ରିନ୍‌ଗୁଡ଼ିକ କାଚ ସୂତାରେ ତିଆରି । କାଚ ସୂତାରୁ ତିଆରି ସ୍କ୍ରିନ୍‌ର ଆଉ ଏକ ସୁବିଧା ହେଉଛି ଯେ ଏହା ଅନ୍ୟାନ୍ୟ ସ୍କ୍ରିନ୍‌ଭଳି ସହଜରେ ମଳି ଧରେନି, ମଳି ଧରିଲେ ମଧ୍ୟ ସହଜରେ ସଫା ହୋଇ ନୂଆ ସ୍କ୍ରିନ୍ ଭଳି ଚକ୍‌ଚକ୍ ଦିଶେ ।

ଆମେ ଯେଉଁଦିନ ଆମ ଡ୍ରଇଂ ରୁମ ପାଇଁ ସୋଫା କିଣିଲୁ, ସେହି ସୋଫା ଉପରେ କାଚ ସୂତାରୁ ତିଆରି କନା ଦିଆ ହୋଇଥିବା ଦେଖି ଖୁସି ନ ହୋଇ ରହି ପାରିଲୁନି । ବାସ୍ତବିକ୍ କାଚଭଳି ଭଗ୍ନପ୍ରବଣ ପଦାର୍ଥକୁ ଏ ଭଳି ନରମ ଓ ମସୃଣ ପଦାର୍ଥରେ ପରିଣତ କରିପାରି ପାରିଥିବାରୁ ମୁଁ ବିଜ୍ଞାନ ଓ ତା'ର ଉପାସକ ବୈଜ୍ଞାନିକମାନଙ୍କୁ ଧନ୍ୟବାଦ ନ ଦେଇ ରହି ପାରିଲିନି ।

କାଚ ତିଆରି ପୋଷାକପତ୍ର କଥା ଶୁଣି ସମସ୍ତଙ୍କର ଜାଣିବାକୁ ଇଚ୍ଛା ହେଉଥିବ, ଏହା ପ୍ରକୃତରେ କେମିତି ହେଉଛି । କାଚ

ତନ୍ତୁ ବା ଇଂରାଜୀରେ ଯାହାକୁ କହନ୍ତି, ‘ ଫାଇବର ଗ୍ଲାସ’ ସର୍ବ-ପ୍ରଥମେ ପ୍ରସ୍ତୁତ ହୋଇ ବଜାରରେ ବିକ୍ରି ହେଲା ଆମେରିକାର ସୁପ୍ରସିଦ୍ଧ କର୍ଣ୍ଣିଙ୍ଗ କାଚକାରଖାନା ଦ୍ୱାରା ଆଜକୁ ପ୍ରାୟ ପଚିଶ ବର୍ଷ ତଳେ । ଆଜି ପର୍ଯ୍ୟନ୍ତ ଏହି କାଚତୁଳା ଓ କାଚ ସୂତା ତିଆରିରେ କର୍ଣ୍ଣିଙ୍ଗ କାଚକାରଖାନାକୁ ମୃଥିବୀର କୌଣସି କାରଖାନା ଟପି ପାରିନି ।

କାଚରୁ ପ୍ରକୃତରେ ତୁଳା ଓ ସୂତା କେମିତି ତିଆରି ହୁଏ ? ଆଧୁନିକ ବିଜ୍ଞାନ ଯେତେ ବଡ଼ ବଡ଼ ଜିନିଷ ଉଦ୍ଭାବନ କରିଛି, ତା ଭିତରୁ ଏହି କାଚ ତୁଳା ଓ ସୂତା ଗୋଟିଏ । କାଚର ଯେଉଁ ମୂଳପିଣ୍ଡ ବାଲି, କ୍ଷାର, ଚୂନ ଆଦିରୁ କାଚ ଗିଲସ, ଥାଳିଆ, ଚୁଡ଼ି, ବୋତଲ ଆଦି କାଚ ଜିନିଷ ତିଆରି ହୁଏ, ସେହି ମୂଳ ପିଣ୍ଡରୁ କାଚସୂତା ଓ ଲୁଗା ମଧ୍ୟ ତିଆରି ହୁଏ । କାଚସୂତା ତିଆରି କରିବାକୁ ହେଲେ ପ୍ରଥମେ ଉପରୋକ୍ତ ବାଲି, କ୍ଷାର, ଚୂନ ଆଦିକୁ ବିଭିନ୍ନ ଭାଗ ମାପ ଅନୁଯାୟୀ ମିଶାଇ ଖୁବ୍ ଉଚ୍ଚ ଉତ୍ତାପରେ ଗରମ କଲେ ସେଗୁଡ଼ିକ ମଧ୍ୟରେ ରାସାୟନିକ ପ୍ରକ୍ରିୟା ସଂଘଟିତ ହୋଇ ତରଳ କାଚର ସୃଷ୍ଟି ହୁଏ । ଏହି ତରଳ କାଚକୁ ନାନା ପ୍ରକାର ଫର୍ମାରେ ପୂରାଇ କାଚ ଗିଲସ, ଥାଳିଆ, ବୋତଲ ଆଦି ତିଆରି କରାଯାଏ । ଏହି ତରଳ କାଚକୁ ଆଉ ଏକ ଯନ୍ତ୍ରରେ ପୂରାଇ ଉପଯୁକ୍ତ ବାଯୁ ଛାଡ଼ିଲେ ତରଳ କାଚରୁ କପା ତନ୍ତୁଭଳି କାଚ ତନ୍ତୁ ସୃଷ୍ଟି ହୁଏ । ଏହି କାଚ ତନ୍ତୁକୁ ଏକାଠି କଲେ ଏହା କପା ତୁଳାଭଳି ଦିଶେ । ଏହି କାଚ ତନ୍ତୁର ସମଷ୍ଟିକୁ କାଚ ତୁଳା କହନ୍ତି । ଏହି କାଚ ତୁଳା ଦେଖିବାକୁ କପା ତୁଳାଭଳି ହେଲେହେଁ ହାତକୁ ସେତେ ନରମ ନ ଲାଗି ଟାଆଁସିଆ ଲାଗେ । ରେଭେନ୍‌ସା କଲେଜର ରାସାୟନା-ଗାରରେ ଏହି କାଚ ତୁଳା ଅଛି ବୋଲି ଡକ୍ଟର ମହାପାତ୍ର କେତେ

ଥରି କହୁଥିଲ ଅବଶ୍ୟ ମୋର ଦେଖିବା ସୌଭାଗ୍ୟ କେବେ ଜୁଟି ନା । ଏହି କାଚ ଗୁଳାରୁ କପା ଗୁଳାରୁ ସୂତା ତିଆରି ହେଲାଭଳି କାଚ ସୂତା ତିଆରି ହୁଏ । ସେଥିପାଇଁ କାଚ ସୂତା କାରଖାନାମାନ ଅଛି । ଏହି କାଚ ସୂତାରୁ କଳରେ ନାନା ପ୍ରକାର କାଚ ଲୁଗା ତିଆରି ହୁଏ । ଏହି କାଚରୁ ତିଆରି ଲୁଗା ଦେଖିବାକୁ ଅବିକଳ ରେଶମ ଲୁଗାଭଳି ଦିଶେ । ଏହାକୁ ପାଣିରେ ବୁଡ଼ାଇ ଲୁଗା ହକାଳିଲା ଭଳି ହକାଳି ହୁଏ ।

ରଙ୍ଗୀନ୍ କାଚ ଲୁଗା ତିଆରି କରିବାକୁ ହେଲେ ତାକୁ ସୂତା ଭଳି ନାନା ପ୍ରକାର ରଙ୍ଗ ପାଣିରେ ବୁଡ଼ାଇ ରଙ୍ଗ କରାଯାଏ ନାହିଁ । ରଙ୍ଗୀନ୍ କାଚ ଯେମିତି ତିଆରି କରାଯାଏ, ସେମିତି ପ୍ରଥମେ ରଙ୍ଗୀନ୍ ତରଳ କାଚ ତିଆରି କରି ସେଥିରୁ ରଙ୍ଗୀନ୍ କାଚ ଗୁଳା ଓ ରଙ୍ଗୀନ୍ କାଚ ଲୁଗା ତିଆରି କରାଯାଏ । ବିଭିନ୍ନ ଜାତିର ରଙ୍ଗୀନ୍ ଲୁଗାରୁ ଯେଉଁଭଳି ରଙ୍ଗ କିଛିଦିନ ପରେ ଗୁଳିଯାଏ ବା ମଳିନ ପଡ଼ିଯାଏ, କାଚ ଲୁଗାର ରଙ୍ଗ ସେଭଳି ଗୁଳିଯାଏନି, କାରଣ ଏଥିରେ ରଙ୍ଗ ସୂତା ଉପରେ ଦିଆ ନ ଯାଇ ସୂତା ଭିତରେ ଦିଆଯାଇଥାଏ । ଆଜକୁ ଛ ବର୍ଷ ତଳେ ଆମ କାଚ ସ୍କ୍ରିନ୍‌ଗୁଡ଼ିକ କିଣାଯାଇଥିଲେ ହେଁ ସେଗୁଡ଼ିକ ଆଜି ପର୍ଯ୍ୟନ୍ତ ନୂଆଭଳି ଝଟକୁଛି ଓ ଆମର ଆଶା ସବୁଦିନ ପାଇଁ ଏଗୁଡ଼ିକ ନୂଆଭଳି ଝଟକୁଥିବ । ଏବେ ବି କଟକରେ ଆମ ବାସଭବନର ଉପର ମହଲାରେ ବେଳେ ବେଳେ କାଚ ସ୍କ୍ରିନ୍ ଲଗାଉଁ । ସେଗୁଡ଼ିକ ଏବେ ବି ନୂଆଭଳି ଝଟକୁଛି । ଝରକା ଓ ଦୁଆର ସ୍କ୍ରିନ୍ ବ୍ୟତୀତ ଟେବୁଲ କ୍ଲଥ, ବିଛଣା ଗୁଦର, ସ୍ତ୍ରୀ ଲୋକଙ୍କର ପେଟିକୋଟ, ପୁରୁଷ ଲୋକମାନଙ୍କର ନେକ୍‌ଟାଇ, ଅଣ୍ଡରଓ୍ୱାର ଆଦି ବହୁ ପ୍ରକାର ପୋଷାକପତ୍ର ଆଜିକାଲି କାଚ ସୂତାରୁ ତିଆରି ହୋଇ ଆମେରିକାରେ ବ୍ୟବହୃତ ହେଉଛି ।

### ଷଷ୍ଠ ଅଧ୍ୟାୟ

# ଆମେରିକା ସ୍ତ୍ରୀଲୋକମାନଙ୍କର ଘର ପ୍ରତି ଯତ୍ନ

ଆମେରିକା ଲୋକଙ୍କ ଘର ସଜା ଦେଖିବାର ଜିନିଷ । ସେମାନଙ୍କର ଛୋଟ ଘରଟିଏ ହେଉ ବା ବଡ଼ ଘରଟିଏ ହେଉ ସେମାନେ ଏମିତି ଭାବରେ ସଜାଇ ଜାଣନ୍ତି, ଯେ ଦେଖିଲେ ଘଡ଼ିଏ ଠିଆ ହୋଇ ଅନାଇବାକୁ ମନ ହେବ । କେଉଁ ସ୍ଥାନରେ କେଉଁ ଜିନିଷ ରଖିଲେ ସୁନ୍ଦର ଦିଶିବ, ସେମାନଙ୍କୁ ଯେତେ ଜଣା, ଅନ୍ୟ କାହାକୁ ସେମିତି ଜଣା ଥିବ କି ନାହିଁ ସନ୍ଦେହ । ଘର ସଜା କାମ ପୁଣି ସେ ଦେଶ ମାଇପିଙ୍କର । ଏମିତି କି ଘର ଭିତରେ ଟେଲିଫୋନ୍‌ଟି କେଉଁଠି ରଖିଲେ ସୁନ୍ଦର ଦିଶିବ, ସେମାନେ ଭାବ-ଚିନ୍ତି ଠିକ୍ କରନ୍ତି । ସେମାନଙ୍କ ଘରେ ତ ଏକାଧିକ ଟେଲିଫୋନ୍ । କେଉଁ ଘରକୁ କେଉଁ ଟେଲିଫୋନ୍ ଭଲ ମାନିବ, ସେମାନଙ୍କୁ ବେଶ୍ ଜଣା । ଶୋଇବା ଘରେ କେମିତିକା ଟେଲିଫୋନ୍, କେଉଁ ରଙ୍ଗର, ରାନ୍ଧୁଆ ଘରେ କି ବୈଠକଖାନାରେ କେଉଁ ରଙ୍ଗର ଓ କେଉଁ ପ୍ରକାରର ଟେଲିଫୋନ୍ ଭଲ ସାଜିବ, ସେମାନେ ବେଶ୍ ଜାଣିଥାନ୍ତି । ଖାଲି ଟେଲିଫୋନ୍‌ରେ ନୁହେଁ । ସବୁ ଜିନିଷ ସଜାଇବାରେ ସେମାନେ ବେଶ୍ ଧୁରନ୍ଧର । ଠିକ୍ ସେମିତି ସ୍କ୍ରିନ୍ କଥା, ବିଜୁଳି ବତି ଓ ଅନ୍ୟାନ୍ୟ ଆସବାବ୍ ପତ୍ର କଥା ।

ଘରକୁ ସାଜଇ ସ୍କ୍ରିନ୍ ଭଳି ନାନା ପ୍ରକାରର ବିଦ୍ୟୁତ୍ ବତ୍ତି, ଘୁଚରେ, କାନ୍ଥରେ ଡ୍ରଇଂ ରୁମ୍‌ର ଗ୍ଲୋଟ ଗ୍ଲୋଟ ଟେବୁଲ ଉପରେ ଦେଖିବାକୁ ଭାରି ଖୁସି ଲାଗେ । ତା' ଛଡ଼ା କେତେ ଡିଜାଇନ୍‌ର କାନ୍ଥଘଣ୍ଟା ସେମାନଙ୍କ କାନ୍ଥରେ । କେଉଁ ଘଡ଼ିରେ ପ୍ରତି ଘଣ୍ଟାରେ ଗୋଟିଏ କୋଇଲି ବାହାରିଆସି କୋବାଉଛି ତ କେଉଁଠି ଘଣ୍ଟା ବାଜିବା ପୂର୍ବରୁ ଗୋଟିଏ ସଙ୍ଗୀତର ସ୍ୱର ବାଜଯାଉଛି । ସେମାନଙ୍କ ଅଧିକାଂଶ ଘଡ଼ି ବିଦ୍ୟୁତ୍ ଶକ୍ତିଦ୍ୱାରା ପରିଚାଳିତ । ଘଡ଼ିରେ ଦମ୍ ଦେବା ଦରକାର ନାହିଁ । ଘରର ଚଟାଣରେ ଦାମିକା ଦାମିକା କାରପେଟ୍, କିଏ ନାଇଲନରୁ ତିଆରି ତ କିଏ ପଶମରୁ ତିଆରି । ତା' ଛଡ଼ା କାନ୍ଥରେ ଗୋଟିଏ ଦୁଇଟି ସୁନ୍ଦର ସୁନ୍ଦର ଦୃଶ୍ୟର ଫଟୋ । ଅଳଅା ପକାଇବାପାଇଁ ସୁନ୍ଦର ସୁନ୍ଦର ପାତ୍ର ଘରର ଗୋଟିଏ କୋଣରେ ଥିବ, ଯା'କୁ ଦେଖିଲେ କେହି କହିବନି ଅଳଅା ଯାଗା ବୋଲି । ଘରର କେଉଁଠି ଟିକିଏ ଅଳିହ୍ନ ଲାଗି ନ ଥିବ । ଘରର ଗୃହିଣୀମାନେ ସେ ସବୁକୁ ପରିଷ୍କାର କରି ଏମିତି ଭାବରେ ରଖିଥିବେ ଯେ ଘରଗୁଡ଼ିକ ଓ ଘରର ଅାସବାବ୍ ପତ୍ରଗୁଡ଼ିକ ସବୁଦିନେ ନୂଆଭଳି ଝଟକୁଥିବ ।

ଖାଇବା ଘରର ସାଜସଜ୍ଜା ଅତି ଉଚ୍ଚକୋଟୀର । ଟେବୁଲ୍ ତା' ଚାରିପାଖରେ ଗଦି ଦିଆ ଚେୟାର, ଗୋଟିଏ ଦୁଇଟି ଫୁଲକୁଣ୍ଡ ଓ ଅଳଅା ପକାଇବା ଯାଗା ଖାଇବା ଘରର ସୌନ୍ଦର୍ଯ୍ୟକୁ ବଢ଼ାଉଥାଏ । ଖାଇବା ଘର ସାଧାରଣତଃ ହାଣ୍ଡିଶାଳକୁ ଲାଗି । ହାଣ୍ଡିଶାଳରୁ ଖାଦ୍ୟ ଆଣିଲେ, ଖାଇବା ଟେବୁଲ ଉପରେ ଖାଇଲେ । ଏହି ଟେବୁଲ୍ ଉପର ସାଜସଜ୍ଜା ଓ ଶୟନ ବେଶ୍ ମନମୁଗ୍ଧକର ।

ଶୋଇବା ଘର ସାଜସଜ୍ଜା କିଛି କମ୍ ନୁହେଁ । ସ୍ୱାମୀ ସ୍ତ୍ରୀଙ୍କର ଗୋଟିଏ ଶୋଇବା ଘର ତ ପିଲାମାନଙ୍କର ଅଲଗା ଅଲଗା

ଶୋଇବା ଘର । ପ୍ରତ୍ୟେକ ପିଲାର ଅଲଗା ଅଲଗା ଶୋଇବା ଘର । କେହି କାହା ଘରେ ଶୋଇବେ ନାହିଁ । ପିଲାମାନେ ବାପ ମା'ଙ୍କ ଘରେ କେବେ ଶୋଇବେ ନାହିଁ । ଏମିତି କି ବର୍ଷେ ଦୁ ବର୍ଷ ପିଲାକୁ ମଧ୍ୟ ବାପ ମା'ମାନେ ଅନ୍ୟ ଘରେ ଶୁଆନ୍ତି । ଆମ ଦେଶରେ ଆମେ ଅବଶ୍ୟ ସେମିତି କରିପାରିବା ନାହିଁ । ଆମ ଦେଶର ପିଲାଙ୍କ ଭଳି ସେ ଦେଶର ପିଲାଏ ଅଲଗା ଘରେ ଶୋଇବାପାଇଁ ଡରକୁଳା ନୁହଁନ୍ତି । ସେମାନେ ବେଶ୍ ସାହସୀ । ଶୋଇବା ପୂର୍ବରୁ ବାପ ମାଙ୍କ-ଠାରୁ ଗୁଡ଼ନାଇଟ୍ କହି ବିଦାୟ ନେଇ ନିଜ ନିଜ ଘରେ ଶୋଇ ବାକୁ ଯାଆନ୍ତି ।

ସେ ଦେଶର ଶୋଇବା ପଲଙ୍କ ବେଶ୍ ଆରାମଦାୟକ, ସବୁ-ଗୁଡ଼ିକ ଡବଲ ସ୍ପ୍ରିଂ ଗଦିଯୁକ୍ତ । କେତେକଙ୍କର ସ୍ପ୍ରିଂ ଗଦି ସହିତ ରବର ଗଦି ବ୍ୟବହୃତ ହୁଏ । ତକିଆଗୁଡ଼ିକ ରବର ଗଦିଯୁକ୍ତ । କୌଣସିଠି ତୁଳା ପଶିବାର ଦେଖାଯାଏନି । ବେଶ୍ ନରମ ଓ ଆରାମ ଦାୟକ । ପଲଙ୍କ ଉପରେ ଧଳା ଚଦର ବିଛାଇ ଶୋଇବା ହେଉଛି ନିୟମ । ସେମାନେ ଆମ ଦେଶ ଭଳି ଯେ କୌଣସି ରଙ୍ଗୀନ ଚଦରଟିଏ ପକାଇ ଶୋଇ ପଡ଼ିବେନି । ସେମାନଙ୍କ ପଲଙ୍କ ପରିଷ୍କାର ପରିଚ୍ଛନ୍ନ, ପଲଙ୍କଗୁଡ଼ିକ ଦିନସାରା ଢଙ୍କା ହୋଇ ରହିଥାଏ ନାନା ପ୍ରକାର ସୁନ୍ଦର ସୁନ୍ଦର ଡିଜାଇନ୍ ଯୁକ୍ତ ଚଦରର ଖୋଳ ସାହାଯ୍ୟରେ । ଠିକ୍ ଶୋଇଲାବେଳକୁ ସେଗୁଡ଼ିକ ବାହାର କରି ଦେଇ ଶୋଇବେ । ସକାଳୁ ଉଠିଲାକ୍ଷଣି ପୁଣି ଢାଙ୍କିଦେବେ । ଏହି ଖୋଳଗୁଡ଼ିକ ପଲଙ୍କର ସୌନ୍ଦର୍ଯ୍ୟ ବଢ଼ାଏ ଓ ବିଛଣା ଚଦରକୁ ସହଜରେ ମଇଳା ହେବାକୁ ଦିଏନି । ଶୋଇବାଘରେ ବି ଭଲ ଭଲ ଗାଲିଚା ଚଟାଣରେ ପଡ଼ିଥାଏ । ଘରେ ଚାଲିଲେ ବି ଆମେରିକାନ୍-ମାନେ ଗୋଡ଼ରେଚଟି ବା ଜୋତା ବ୍ୟବହାର କରନ୍ତି । ସେଥିପାଇଁ

କେତେ ପ୍ରକାର କୋଠା ପ୍ରଚଳିତ । କିଏ ବେଡ୍‌ରୁମ୍ ଚାହିଁ ତ କିଏ ବାଥ୍‌ରୁମ୍ ଚାହିଁ । ଯଦିତ ଘରର ଗୃହିଣୀମାନେ ନରମ ନରମ ଗାଲିଚା ପକାଉଛନ୍ତି ସେମାନେ କେବେ ବନାଉଚନ୍ତିରେ ଏ ଘରୁ ସେ ଘରକୁ ଯିବେନ ।

ଶୋଇବାଘରେ ସାଧାରଣତଃ ସେମାନେ ରେଡ଼ିଓ ରଖି-ଥାନ୍ତି । ସେମାନଙ୍କ ରେଡ଼ିଓ ବିଚିତ୍ର ଧରଣର । ଏହା ମନକୁ ମନ ବାଜିଉଠେ ଓ ମନକୁ ମନ ବନ୍ଦ ହୋଇଯାଏ । ତୁମେ ଶୋଇବାକୁ ଗଲ, ରେଡ଼ିଓ ବଜାଇ ଦେଇ ଗଲ । ରେଡ଼ିଓ ଶୁଣୁ ଶୁଣୁ ତୁମକୁ ନିଦ ହୋଇଗଲା । ତୁମେ ଶୋଇପଡ଼ିଲା ପରେ ରେଡ଼ିଓ ବାଜି ବାଜି ମନକୁ ମନ ବନ୍ଦ ହୋଇଯିବ । ସକାଳୁ ତୁମ ଉଠିବା ପୂର୍ବରୁ ରେଡ଼ିଓ ପୁଣି ମନକୁ ମନ ବାଜି ଉଠିଥିବ । ତୁମେ ଉଠିଲା ବେଳକୁ ଶୁଣିବ ରେଡ଼ିଓ ପୁଣି ବାଜୁଛି । ନଜାଣିଲା ଲୋକ ଭାବିବ ଯେ ରେଡ଼ିଓ ରାତିସାରା ବାଜୁଥିଲା ବୋଲି । କିନ୍ତୁ ଏ ଭିତରେ ରେଡ଼ିଓ ବନ୍ଦ ହୋଇ ମନକୁମନ ବାଜିଲାଣି ତୁମକୁ ଜଣା ନାହିଁ । ସେମିତି ଗ୍ରାମୋଫୋନ୍ ମଧ୍ୟ । ସେ ଦେଶରେ ଗ୍ରାମୋଫୋନ୍ ଗୁଡ଼ାକ ତ ଅଟୋମେଟିକ୍ । ସେ ବି ମଧ୍ୟ ମନକୁମନ ବାଜିବ ଓ ମନକୁମନ ବନ୍ଦ ହେବ । ଇତିହାସରେ ଆକ୍‌ବର ବାଦସାହା ଗୀତ ଶୁଣୁଶୁଣୁ ଶୁଅନ୍ତି ଓ ଉଠିଲାବେଳକୁ ଗୀତ ଶୁଣନ୍ତି ଓ ରାତିସାରା ଗାୟକ ଗାୟିକାମାନେ ଅନିଦ୍ରା ହୋଇ ତାଙ୍କ ଶୋଇବାକୁ ଧ୍ୟାନ ଦେଇ ଅନାଇ ବସିଥାନ୍ତି । ଏଠି ସେହି ବାଦସାହା ଉପଭୋଗ କରିପାର, କିନ୍ତୁ କେହି ଅନିଦ୍ରା ହୋଇ ଜଗିରହିବା ଦରକାର ନାହିଁ । ଯନ୍ତ୍ର ସେ କାମ ତୁମ ଅନୁପସ୍ଥିତିରେ କରିଯାଉଛି ।

ଶୋଇବା ପୂର୍ବରୁ ପ୍ରତ୍ୟେକଙ୍କଠାରୁ 'ଗୁଡ୍‌ନାଇଟ୍' କହି ବିଦାୟ ନେଇ ଓ ସକାଳୁ ଉଠିବାପରେ ପ୍ରଥମ ସାକ୍ଷାତରେ

'ଗୁଡ୍‌ମର୍ଣ୍ଣିଙ୍ଗ' କହି ଅଭିବାଦନ କରିବା ସେମାନଙ୍କ ପରିବାରରେ ଏକ ମାମୁଲି ଅଭ୍ୟାସ । ଏମିତି କି ଦୁଇବର୍ଷର ପିଲାଟିଏ ମଧ୍ୟ ଗୁଡ୍‌ନାଇଟ୍, ଗୁଡ୍‌ମର୍ଣ୍ଣିଙ୍ଗ କହିବ । ସେମାନଙ୍କ ଛୋଟ ଛୋଟ ପିଲାଙ୍କର ଏମିତି ଅଭ୍ୟାସ ଦେଖିଲେ ଆମକୁ ଭାରି ଖୁସିଲାଗେ ।

ଆମେରିକାରେ ବହୁ ଲୋକଙ୍କ ଘର ଶୀତତାପନିୟନ୍ତ୍ରିତ । ଶୀତଦିନେ ଘରଗୁଡ଼ିକ ଗରମ ଓ ଗ୍ରୀଷ୍ମଦିନେ ଘରଗୁଡ଼ିକ ଥଣ୍ଡା । ଅନେକଙ୍କର ଶୀତତାପନିୟନ୍ତ୍ରଣ ନାହିଁ ସତ; କିନ୍ତୁ ଶୀତଦିନେ ଘର ଗୁଡ଼ିକ ଗରମ ରଖାଯାଇଥାଏ । ତା ନ ହେଲେ ସେଭଳି ଶୀତ ଦେଶରେ ଚଳିବା ଅତୀବ କଷ୍ଟକର ।

ବାହାରକୁ ଗଲେ ମଟରଗାଡ଼ି । ପ୍ରତ୍ୟେକଙ୍କ ଘରେ ତ ଅନ୍ତତଃ ଗୋଟିଏ ମଟରଗାଡ଼ି । ତେବେ ସ୍ୱାମୀ, ସ୍ତ୍ରୀଙ୍କର ମଟରଗାଡ଼ି ଅନେକ ଘରେ ଅଲଗା । ଏମିତି ଘର ଅଛି ଯେଉଁଠି ପୁଅଝିଅଙ୍କର ଅଲଗା ଅଲଗା ମଟରଗାଡ଼ି ଅଛି । କାହାର କାହାର ମଟରଗାଡ଼ି ଖୁବ୍ ଦାମିକା ତ କାହାର କାହାର ଅଳ୍ପ ଦାମିକା । ଯେଉଁମାନେ ଗରିବ, ସେମାନଙ୍କର ସେକେଣ୍ଡହାଣ୍ଡ ମୋଟରଗାଡ଼ି । ସେମାନଙ୍କ ଘର କରଣା ଭିତରେ ମୋଟରଗାଡ଼ି ହେଲା ଏକ ପ୍ରଧାନ ଜିନିଷ । କାହାର ଯଦି ମୋଟରଗାଡ଼ି ନାହିଁ ତେବେ ତାର ସବୁ ଘର କରଣା ଥାଇ କି ନାହିଁ ।

ଆମେରିକାନ୍ ସ୍ତ୍ରୀ ଲୋକମାନଙ୍କର ଗହଣା ଗାଣ୍ଠିବୋଲି ସେମିତି କିଛି ନାହିଁ । ସୁନା ଗହଣା କଥା ଛାଡ଼, ସୁନା ଗହଣା କାହାର ପାଇବନି । ପ୍ରତ୍ୟେକ ସ୍ତ୍ରୀଙ୍କ ହାତରେ ମୁଦିଟିଏ ପାଇବ । ସେ ମୁଦି ପୁଣି ୧୪ କ୍ୟାରେଟ୍ ସୁନାରୁ ତିଆରି । ୧୪ କ୍ୟାରେଟ୍ ସୁନା ହେଲା ସେମାନଙ୍କ ଦେଶରେ ଖାଣ୍ଟିସୁନା । ଏହାଠାରୁ ଅଧିକ ସୁନାଥିବା ମୁଦି ମିଳେନି । ଯେଉଁମାନେ ଧନୀ, ସେମାନେ ସୁନା

ପରିବର୍ତ୍ତରେ ପ୍ଲାଟିନମ୍ ମୁଦି ଲଗାନ୍ତି ଓ ସେ ମୁଦିରେ ହୀରା ବସିଥାଏ । ଆଜିକାଲି ଏଭଳି ହୀରାବସା ମୁଦିର ଖୁବ୍ ପ୍ରଚଳନ ହେଲାଣି । ଆଜିକାଲି ଦେଖିବ, ଅଧିକାଂଶ 'ବିବାହ ମୁଦି' ଏକ୍ଟ ହୀରାରୁ ତିଆରି । ପୁଣି ହୀରା ଭିତରେ ତଫାତ୍ ଅଛି । କେଉଁ ମୁଦି ଖୁବ୍ ଦାମିକା ତ କିଏ ଶସ୍ତା । ବିଶେଷତଃ ହୀରାର ଆକାର ନେଇ ମୂଲ୍ୟରେ ଏଭଳି ତାରତମ୍ୟ ହୁଏ । ଆମେରିକାରେ ଆଉଗୋଟିଏ ପ୍ରକାର ମିଶାସୁନା ମିଳେ, ତାକୁ ସେମାନେ କହନ୍ତି ଧଳାସୁନା ବା White Gold । ଏହା ଭାରି ଲୋକପ୍ରିୟ ସେ ଦେଶରେ । ଏଥିରୁ ତିଆରି ମୁଦି ଓ ଗହଣା ସେ ଦେଶରେ ବେଶ ପିନ୍ଧନ୍ତି ।

ବେକରେ ହାର ଓ କାନରେ କାନଫୁଲ ସେମାନେ ବେଳେ ବେଳେ ଲଗାନ୍ତି । ସେଗୁଡ଼ିକରୁ ଅଧିକାଂଶ ସୁନା କଲିଇ ହୋଇଥିବା ଆଲୁମିନିୟମ ଗହଣା । ସେମାନେ ଯଦି କୁଆଡେ ବୁଲିଗଲେ ଏମିତି ହାର ବେକରେ ଗୋଟିଏ ପକାଇଦେଇ ଯିବେ । ଦେଖିଲେ ସେ କେହି କହିବ ଖାଣ୍ଟି ସୁନା ଗହଣା ବୋଲି । ଆମେରିକାରେ କେତେକ ସ୍ତ୍ରୀ ଲୋକ ବେକରେ ପଥରମାଳି ପକାଇବାକୁ ଭଲ ପାଆନ୍ତି । ସେମିତି ଦୁଇ ରକମ ହାର ପକାଇ ଦେଇ ବୁଲି ବାହାରି ଆସିବେ । ଯେଉଁମାନେ ଖୁବ୍ ଧନୀ ଓ ଆଭିଜାତ୍ୟ ପୂର୍ଣ୍ଣ ସେମାନେ ହୀରାବସା ସୁନା ହାର ପିନ୍ଧନ୍ତି, ଯା'ର ଦାମ୍ ବେଳେବେଳେ ଲକ୍ଷ ଲକ୍ଷ ଟଙ୍କାରୁ ବଳିଯାଏ । ଏତେ ଦାମିକା ହାର ବ୍ୟବହାର କରୁଥିବା ସ୍ତ୍ରୀ ଲୋକମାନଙ୍କ ସଂଖ୍ୟା ବେଶି ନୁହେଁ । ଆମେରିକାର ସାଧାରଣ ସ୍ତ୍ରୀ ଲୋକେ ଏମିତି ଫେସନ୍ ଠାରୁ ତେର ଦୂରରେ ।

ଆମେରିକାନ୍ ସ୍ତ୍ରୀ ମାନଙ୍କର ଦାମିକା କୋଟ୍ ବ୍ୟବହାର ପ୍ରତି ଖୁବ ସୌଖୀନ । ସେମାନେ ଦାମିକା କୋଟ୍ ବ୍ୟବହାର ପ୍ରତି ବଡ଼ ଆଦର ଦେଖାନ୍ତି । ମିଙ୍କ୍ କୋଟ୍ ହେଲା ସେମାନଙ୍କର ସବୁଠାରୁ ଆଦରର କୋଟ୍ । ଯାର ମିଙ୍କ୍‌କୋଟ୍ ଅଛି ତାର ସମ୍ମାନ ସମାଜରେ ଟିକଏ ବେଶି । ଏହି ମିଙ୍କ୍‌କୋଟର ଦାମ୍ ଅପେକ୍ଷାକୃତ ବେଶି । ଗୋଟିଏ ଗୋଟିଏ ମିଙ୍କ୍‌କୋଟର ଦାମ୍ ଲକ୍ଷ ଲକ୍ଷ ଟଙ୍କାରୁ ବେଶି । ଧନୀ ବଂଶର ସ୍ତ୍ରୀ ଲୋକେ ଏଭଳି ମୂଲ୍ୟବାନ୍ କୋଟ୍ ପିନ୍ଧନ୍ତି ।

ଆମେରିକା ଲୋକଙ୍କ ଘରକରଣା ଧନ ସମ୍ପଦ ହେଲା ଏଇ । ତା ସହିତ ସେମାନଙ୍କ ବାଢ଼ିବଗିଚା ଅଛି । ନିଜ ରୂପକୁ ସଜାଇବା ଆମେରିକାନ୍ ସ୍ତ୍ରୀ ଲୋକମାନଙ୍କର ଏକ ପ୍ରଧାନ କାମ । ବାହାରକୁ ବାହାରି ଗଲେ ନିଜ ରୂପକୁ ନ ସଜାଇ ବାହାରିବେ ନାହିଁ । ନିଜ ଘରକୁ ଯଦି କେହି ବୁଲି ଆସିବେ, ସେମାନେ ନିଜକୁ ସଜାସଜି କରି ଅପେକ୍ଷା କରିଥିବେ । ଓଠରେ ଲିପଷ୍ଟିକଠାରୁ ଆରମ୍ଭ କରି ଆଖି ବାଳରେ କଳାରଙ୍ଗ, ଆଖିପତାରେ ନୀଳରଙ୍ଗ ପର୍ଯ୍ୟନ୍ତ କେତେ ରୂପ ପ୍ରସାଧନୀ ଯେ ବ୍ୟବହାର କରନ୍ତି, ତାର କଳନା ନାହିଁ । ସେମାନଙ୍କ ରୂପ ପ୍ରସାଧନୀ କଥା କହି ବସିଲେ ଆଉ ଗୋଟିଏ ପ୍ରବନ୍ଧ ହେବ । ତେବେ ଏତିକି କହିଲେ ସ୍ପଷ୍ଟ ହେବ ଯେ ପୃଥିବୀରେ ଯେତେ ମହିଳା ନିଜ ନିଜ ରୂପ ପ୍ରସାଧନୀ ପାଇଁ ଯେତେ ଖରଚ କରନ୍ତି, ଆମେରିକାନ୍ ମହିଳାମାନେ ଖର୍ଚ୍ଚ କରନ୍ତି ସବୁଠାରୁ ଅଧିକ । ସେମାନଙ୍କ ତଳକୁ ବର୍ତ୍ତମାନ ଫରାସୀ ମହିଳାଙ୍କ ସ୍ଥାନ ।

—*—

## ସପ୍ତମ ଅଧ୍ୟାୟ

# ଆମେରିକାର ଲୋକଙ୍କ ହାଣ୍ଡିଶାଳ

ଆମେରିକା ଆସିବା କେତେ ମାସ ପର୍ଯ୍ୟନ୍ତ ମୋତେ ଭାରି ଅଡୁଆ ଅଡୁଆ ଲାଗୁଥାଏ । ଆମେରିକାରେ ଆମେ କେମିତି ଚଳିବୁଁ, ଆମେରିକା ଆସିବାକଥା ଠିକ୍ ହେବା ଦିନଠୁଁ ମୋ ମନରେ ସବୁବେଳେ ଖେଳୁଥାଏ । ଆମେରିକାର ସମାଜ, ଲୋକଙ୍କ ଚାଲିଚଳନ, ସେଠିକାର ବଜାର, ହାଟ ଆମ ଦେଶଠାରୁ କି ସ୍ୱତନ୍ତ୍ର, ସେଠାର ଲୋକେ ଆମଙ୍କୁ କି ଆଖିରେଦେଖିବେ, ଆମେ ତାଙ୍କ ସମାଜରେ ମିଶି ଚଳିପାରିବୁ କି ନାହିଁ, ଏହି କଥା ସବୁବେଳେ ମୋ ମୁଣ୍ଡରେ ଖେଳୁଥାଏ । କିନ୍ତୁ ଆମେରିକାରେ ପହଞ୍ଚି ଦେଖିଲି ସେସବୁ ଆଶଙ୍କା କରିବାର ନାହିଁ । ଆମେରିକାରେ ମାଇପେ ଭାରି ମେଳାପୀ । ତଥାପି ମୁଁ ସେମାନଙ୍କ ସହିତ ଭଲ ଭାବରେ ମିଶିପାରୁ ନ ଥାଏ । ମୋର ଇଂରାଜୀ ଭାଷାରେ ଅଜ୍ଞତା ହିଁ ପ୍ରତିବନ୍ଧକ ହୋଇଥାଏ । ସେମାନେ ସବୁବେଳେ ମୋତେ ସେମାନଙ୍କ କଥା ବୁଝାଇବାକୁ ଚେଷ୍ଟା କରୁଥାନ୍ତି । ପୁରୁଷ ଲୋକମାନେ ଖାଇପିଇ ଅଫିସ ଆଡ଼କୁ ଚାଲିଗଲେ ଆମ ସ୍ତ୍ରୀଲୋକମାନଙ୍କର ମେଳ ହୁଏ । ସେମାନେ ଆମ ଘରକୁ ଆସନ୍ତି, ବେଳେ ବେଳେ ମୋତେ ସେମାନଙ୍କ ଘରକୁ ଡାକି ନେଇଯାନ୍ତି । ମୁଁ ସେମାନଙ୍କର ଘର ସାଜସଜ୍ଜା ଦେଖି ଅବାକ୍ ହୋଇଯାଏ । ଆମେରିକାର ହାଣ୍ଡିଶାଳ ଦେଖିଲେ ଆମ ଦେଶର ହାଣ୍ଡିଶାଳ କଥା ମନେପଡ଼େ । ଆମ ଦେଶର

ହାଣ୍ଡିଶାଳ କୋଇଲେ, ଏକ ଅନ୍ଧାରିଆ ଅସନା, କଳା କଳା କାନ୍ଥଥିବା ଘରକୁ ବୁଝାଏ । ସେ ଘର ଭିତରେ କାନ୍ଥ, ଗୃହ, ହାଣ୍ଡିକୁଣ୍ଡେଇ କଳା ଆଉ ଅସନା, ହାଣ୍ଡିଶାଳ ଭିତରେ ଯଦି କେହି ନଜାଣିଲା ଲୋକ ପଶେ, ତେବେ ବାହାରି ଆସିଲା ବେଳକୁ ତା ଦେହରେ କେଉଁଠି ନା କେଉଁଠି ମେଞ୍ଚାଏ କଳା ଲାଗି ଯାଇଥିବ । ଡେକ୍‌ଚି, କରେଇ, ହାଣ୍ଡି ଆଦିକା ସବୁ କଳା ବଳବଳ । କିନ୍ତୁ ଏମାନଙ୍କର ହାଣ୍ଡିଶାଳକୁ ପଶିଗଲେ କେଉଁଠି କଳା ଲାଗିଥିବା ଦାଗଟିଏ ବି ଦେଖିବାକୁ ମିଳିବ ନାହିଁ । କି ସଫା ସୁତୁରା ? ରୋଷେଇ ଘରକୁ ପଶିଗଲେ ପ୍ରଥମେ ଜାଣିହେବ ନାହିଁ ଯେ କିପରି ଚୂଲି ଲଗାଇବ, କିପରି ପରିବା କାଟିବ ଓ ମସଲା ବାଟିବ । ଏ ଦେଶର ଚୂଲି ଦେଖି ତାହା ଚୂଲି କି କଅଣ ପ୍ରଥମେ ବୁଝିପାରି ନଥିଲି । ପରିବା କାଟିବା ପାଇଁ ପନିକି ନାହିଁ କି ମସଲା ବାଟିବା ପାଇଁ ଶିଳ ଶିଳପୁଆ ନାହିଁ । ଏହି ପରିସ୍ଥିତିରେ ପଡ଼ି ପ୍ରଥମେ କେତେଦିନ ମୋତେ ଅଡୁଆ ଲାଗିଲା । କିଛିଦିନ ପରେ ସେଥିରେ ଏତେଦୂର ଅଭ୍ୟସ୍ତ ହୋଇଗଲି ଯେ, ଆମ ଦେଶ ରୋଷେଇ ଘର କଥା ମନେ ପଡ଼ିଲେ ଦୁଃଖ ଲାଗିଲା । ବାସ୍ତବିକ୍ ଆମ ଦେଶ ରୋଷେଇ ଘରେ ପଶି କାମ କରିବା କି ବିରକ୍ତିକର ?

ଏ ଦେଶରେ ସବୁଆଡ଼େ ଗ୍ୟାସ ଚୂଲି କିମ୍ବା ଇଲେକ୍‌ଟ୍ରିକ ଚୂଲି । କାଠ କିମ୍ବା କୋଇଲାର ଆବଶ୍ୟକତା ନାହିଁ । ଗ୍ୟାସ ଚୂଲି ସୁଇଚ ଟିପିଲେ ଷ୍ଟୋଭ୍ ଭଳି ଜଳି ଉଠିବ । ଦିଆସିଲି ମାରିବା ବି ଦରକାର ନାହିଁ । ଏହା ଭିତରେ ଷ୍ଟୋଭ ପାଇଲଟ ଲ୍ୟାମ୍ପଟିଏ ଷ୍ଟୋଭ ଦୀପଶିଖା ଭଳି ସବୁବେଳେ ଜଳୁଥାଏ । ସୁଇଚ ମୋଡ଼ିଲେ ଆପେ ଆପେ ଜଳିଉଠେ ଓ ଲିଭିଯାଏ । ନିଆଁ ତାତି କମ ବେଶୀ କରିବା ସୁଇଚ ଉପରେ ନିର୍ଭର କରେ ।



ମାର୍କିନ ପରିବାରର ରନ୍ଧନଶାଳା

ଗ୍ୟାସ ଚୂଲି ଦେଖିବାକୁ ଉଚ୍ଚା ତିନିଫୁଟ, ଲମ୍ବା ଚଉଡ଼ା ମଧ୍ୟ ପ୍ରାୟ ତିନିଫୁଟ ହେବ । ବସିରହି ରାନ୍ଧିବାର କଥା ନାହିଁ । ଠିଆହୋଇ ରାନ୍ଧିବାକୁ ହୁଏ । ଗୋଟିଏ ଚୂଲିରେ ଚାରୋଟି ଡେକଚି କରେଇ ବସିବା ସ୍ଥାନ, ଗୋଟିଏ ଥରରେ ଚାରି ପ୍ରକାରର ରନ୍ଧା ବସାଇ ରାନ୍ଧିହେବ । ସେଥିଭିତରେ ଚୂଲି କଡ଼ରେ ପାଞ୍ଚଟି ସୁଇଚ ଅଛି । ଓଭନ ପାଇଁ ଗୋଟିଏ ସୁଇଚ । ସେମାନଙ୍କ ଚୂଲିରେ ଆମ ଦେଶ ଭଳି ଡେକଚି, ହାଣ୍ଡି, କି କରେଇ ବସି ରାନ୍ଧି ହେବ ନି । ସେମାନଙ୍କ ଡେକଚି ତଳ ଚଟକା, ଆମ ଭଳି ଗୋଲାକାର ନୁହେଁ । ଆମ ଦେଶର ସସପେନ୍ ତଳ ଯେମିତି ଚଟକା, ସେମିତି ଚଟକା ।

ଓଭନ କଣ ଜାଣିବା ଦରକାର । ଗ୍ୟାସ ଚୂଲି ମଝିରେ ଆଲମିରା ଥାକ ଭଳି ଗୋଟିଏ ଥାକ ଅଛି । ତଳିରେ କବାଟ ଲାଗିଛି । ଓଭନ ସୁଇଚ ମୋଡ଼ିଲେ ଓଭନ ଭିତରେ ଖୁବ୍ ତାତି ହୁଏ । ଓଭନରେ ଥିବା ଉପର ତଳ ଥାକ ସାହାଯ୍ୟରେ କେକ, ନାନଖଟାଇ, ବିସ୍କୁଟ ଆଦି ବିଭିନ୍ନ ପ୍ରକାରର ଖାଦ୍ୟ ଘରେ ତିଆରି ହୋଇପାରୁଛି । ହଁ, କୁକୁଡ଼ା ମାଂସ ଓ ଅନ୍ୟାନ୍ୟ ମାଂସ ଆଦି ଏହି ଓଭନରେ ରୋଷ୍ଟ କରାଯାଏ । ଆମେରିକା ଲୋକଙ୍କର ଏହି ରୋଷ୍ଟ ଅତି ପ୍ରିୟ ଖାଦ୍ୟ ।

ପରିବା କାଟିବା ଗୋଟିଏ ବଡ଼ କାମ । ଏଠାରେ ତ ପନିକି ମିଳେ ନାହିଁ, ଛୁରୀରେ ସମସ୍ତ ପରିବା କାଟିବାକୁ ହୁଏ । ପରିବା କଟା ଛୁରୀ ଟିକିଏ ଅଲଗା ଧରଣର । ଏହାର ମୁଣ୍ଡପାଖରୁ ତିନିଇଞ୍ଚ ପର୍ଯ୍ୟନ୍ତ କରତ ଭଳି ଧାର ହୋଇଥାଏ । ତେଣୁ କରତରେ କାଟିଲା ଭଳି ପରିବା ସହଜରେ କାଟି ହୋଇଯାଏ । ତା ପରେ ମସଲାବଟା କଥା । ଏଠାରେ ତ ଶିଳ ଶିଳପୁଆ ନାହିଁ, ମସଲା ବାଟିବ କାହିଁରେ ? ସେ ସମସ୍ୟା ସମାଧାନ ହୁଏ ଅନ୍ୟ ପ୍ରକାରରେ । ଖୁବ୍ ସୁନ୍ଦର ପ୍ଲେଟ

ଟିଣ ଓ ବୋତଲରେ ମୁଦା ହୋଇ ସବୁ ପ୍ରକାରର ମସଲାଗୁଣ୍ଡ ବଜାରରେ କିଣିବାକୁ ମିଳେ । ଯାହାକୁ ଆମ ଦେଶରେ କପଡ଼ା ଛୁଙ୍କ କହନ୍ତି, ସେହିଭଳି ଗୁଣ୍ଡ ମସଲା । ବଟା ମସଲାଠୁଁ ଆହୁରି ଭଲ । ଆମେରିକା ଲୋକେ ମସଲା ଖାଆନ୍ତି ନାହିଁ । ଇଟାଲିଆନଙ୍କ ଯୋଗୁଁ ଆମେ ଏଠାରେ ସବୁ ପ୍ରକାରର ମସଲା ପାଇ ପାରୁଛୁ । ଇଟାଲୀର ଲୋକେ ଆମ ଭଳି ମସଲା ଦେଇ ରାନ୍ଧନ୍ତି । ଆମ ଦେଶରେ ରଙ୍ଗ ତରକାରୀ ବଡ଼ ପସନ୍ଦ ଓ ମାଂସ ତରକାରୀ କି ମାଛ ତରକାରୀ ଯଦି ରଙ୍ଗ ନ ହେଲା ଆମ ଦେଶରେ ପସନ୍ଦ ନାହିଁ । ଆମ ଦେଶ ରନ୍ଧା ଭଳି ମୁଁ ସେଠାରେ ରାନ୍ଧୁଥିଲି । ଆମେରିକାର ମାର୍କିନ ପଡ଼ୋଶୀମାନେ ମୋ ରନ୍ଧା ତରକାରି ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ତରକାରୀ କାହିଁକି ରଙ୍ଗ ଦିଶୁଛି ଓ କପରି ରଙ୍ଗ ହେଉଛି, ସେମାନେ ତାହା ଜାଣିବାକୁ ଉତ୍ସୁକ । କେହି କେହି ତାହା ଚାଖିଛନ୍ତି ଏବଂ ସ୍ୱାଦୁ ଲାଗୁଛି ବୋଲି ସାର୍ଟିଫିକେଟ ଦେଇଛନ୍ତି । ବହୁ ଆମେରିକାନ ଆମ ତରକାରୀ ଖାଇବା ଦୂରେଥାଉ, ଦେଖିଦେଲେ ସେମାନଙ୍କୁ ଅରୁଚି ଆସିବ । ସେମାନେ ଲଙ୍କା ଖାଆନ୍ତି ନାହିଁ କମ୍ବା ହଳଦୀ ଟିକିଏ ମଧ୍ୟ ତରକାରିରେ ପକାନ୍ତି ନାହିଁ । ବଜାର କଥା ତ ଛାଡ଼ ଆମ ଦେଶ ରନ୍ଧାଠୁଁ ପୂରାପୂରି ଅଲଗା ।

ପ୍ରଥମେ ମୁଁ ଏଠାକୁ ଆସି ଭାବୁଥିଲି, ମସଲା ନ ବାଟି କପରି ମାଛ ଓ ମାଂସ ରାନ୍ଧିବ, ମସଲାଗୁଣ୍ଡ ପକାଇ ରାନ୍ଧିଲେ ନିଶ୍ଚୟ ଝୋଳ ପାଣିଚିଆ ହେବ । ବଟା ମସଲା ନ ଦେଲେ ଝୋଳ କପରି ବହଳ ହେବ ? ପ୍ରଥମେ ତରକାରୀ ବସାଇଲା ବେଳେ ହଳଦୀଗୁଣ୍ଡ, ପିଆଜ ଗୁଣ୍ଡ ଓ ରସୁଣଗୁଣ୍ଡ ପକାଇ ଭଲକରି ଘାଣ୍ଟିଦେଇ ପାଣି ଢ଼ାଳିଦିଏ । ସୁଇଚ କମ ଇଦେଲେ ଚୂଲି ଆସ୍ତେ ଆସ୍ତେ ଜଳେ ଝୋଳ ବହଳ ହୋଇଯାଏ ଏବଂ ସେ ଝୋଳ ଓ ତରକାରୀ ସୁସ୍ୱାଦୁ ହୁଏ । ଆମ

ଦେଶରେ ମଛ, ମାଂସ ରନ୍ଧାହେବା ବେଳେ ଯେପରି ମସଲା ବାଟିବାକୁ ହୁଏ ତାହା ପ୍ରତ୍ୟେକ ଘରଣୀ ଅନୁଭବ କରିଛନ୍ତି । ଏହି ମସଲାବଟା ଆମ ଦେଶର ଗୋଟିଏ ବଡ଼ କଷ୍ଟକର କାମ । ସେ କଷ୍ଟ ସେଠି ନାହିଁ ।

ପ୍ରଥମେ ମୋର ପସନ୍ଦ ହେଉ ନ ଥିଲା ଯେ ଗୁଣ୍ଡ ମସଲା ଦେଇ କିପରି ରାନ୍ଧିବ । କିନ୍ତୁ ବର୍ତ୍ତମାନ ଅଳ୍ପ ପରିଶ୍ରମରେ ବେଶ୍ ଭଲ ରାନ୍ଧିହେଉଛି । ଅବସ୍ଥା ଏପରି ହେଲାଣି ଯେ ଆମ ଦେଶ ଶିଳ ଶିଳପୁଆ କଥା ଭୁଲିଯିବାକୁ ବସିଲାଣି ।

ଗ୍ୟାସ ଷ୍ଟୋଭଠାରୁ ଇଲେକ୍‌ଟ୍ରିକ ଷ୍ଟୋଭ ରାନ୍ଧିବାକୁ ଆହୁରି ଭଲ । ଦେଖିବାକୁ ଗ୍ୟାସ ଷ୍ଟୋଭ ଭଳି, ସୁଇଚ ଚାରି ଅଲଗା ପ୍ରକାରର । ସୁଇଚ୍ ଉପରେ ନମ୍ବର ଲେଖା ହୋଇଛି । ନମ୍ବର ଦେଖି କମ ବେଶି ତାଉ କରିବାକୁ ହେବ । ହଁ, ଆଉ ଗୋଟିଏ ସୁବିଧା ଓ ଆଶ୍ଚର୍ଯ୍ୟ କଥା । ଷ୍ଟୋଭ ଉପରେ ଗୋଟିଏ ମିଟରଯନ୍ତ୍ର ଖଞ୍ଜାଯାଇଛି । ତାହାକୁ ଦେଖିଦେଲେ ଜାଣିହେବ, ଘିଅ ତରକାରି ହେଲାଣି କି ନାହିଁ । ଆମ ଦେଶ ଇଲେକ୍‌ଟ୍ରିକ ଷ୍ଟୋଭଠାରୁ ଅଲଗା । ଘିଅ ତରକାରି ହୋଇ ସାରିଲେ ଆପେ ଆପେ ଚୁଲି ଲିଭିଯିବ । ଆମ ଦେଶର ରନ୍ଧା ଭଲ ହେବା ନ ହେବା, ରନ୍ଧଣୀ ଉପରେ ନିର୍ଭର କରେ । କିନ୍ତୁ ଏଠାରେ ମିଟର ଏପରି କାର୍ଯ୍ୟ କରୁଛି ଯେ, ରନ୍ଧା ପୋଡ଼ିଯିବା କିମ୍ବା ଦରସିଝ ହେବା ଭୟ ନାହିଁ । ତେଣୁ ଏ ଦେଶରେ ରନ୍ଧଣୀକୁ ଆଉ ପୁରୁଷମାନଙ୍କଠାରୁ ଗଞ୍ଜଣା ସହିବାର ଅବକାଶ ନାହିଁ ।

ସପ୍ତାହରେ ଥରେ ବଜାର କରିବାକୁ ହୁଏ । ଦୁଧ, ଦହି ଛେନା, ଇତ୍ୟାଦି ସବୁ ଜିନିଷ ସାତଦିନ ଚଳିବାଭଳି ଥରେ ଅଣାଯାଏ । ପ୍ରତିଦିନ କିଣିଲାଭଳି ଘରେ ରଖି ଖାଇ ହୁଏ । ଆମ

ଦେଶରେ ଦୁଧ ଦିନକୁ ଦୁଇ ଦିନ ରଖିଲେ ଦହି ହୋଇଯିବ । ଛେନା ମଧ୍ୟ ଖଟା ହୋଇଯିବ । ସେଥିରେ ରସଗୋଲା, ରସାବଳୀ ଆଦି କଲେ ଫିଟିଯିବ । ଘୋଳ ଦହି ଗରମ ଦିନରେ ଖଟା ଯୋଗୁଁ କାଞ୍ଜି କଲେ ମଧ୍ୟ ରୁଚିକର ହୁଏ ନାହିଁ । ବିଶେଷତଃ ମାଛ ମାଂସ କଞ୍ଚା ହେଉଥାଉ ଭାଜକରି ମଧ୍ୟ ରଖି ଦିନେ ଦୁଇଦିନ ଖାଇ ହୁଏ ନାହିଁ ।

ସପ୍ତାହରେ ଥରେ ଦୁଧ ଆଣି ଆମେ ପ୍ରତିଦିନ ବ୍ୟବହାର କରୁ ଖାଉଁ । ବଜାର କଣା ଛେନାରେ ରସାବଳୀ ଇତ୍ୟାଦି ହୋଇ ପାରୁଛି । ସପ୍ତାହରେ ଥରେ ବଜାରକୁ ଯାଇ ମାଛ ମାଂସ କିଣି ଆଣିଲେ ସପ୍ତାହକ ପାଇଁ ରନ୍ଧା ହେଲା । ଏସବୁ କେମିତି ହେଉଛି ? ଆମେରିକାର ପ୍ରତ୍ୟେକ ଲୋକଙ୍କ ରୋଷାଇ ଘରେ ଗୋଟିଏ ଲମ୍ବା ଯୋଡ଼ାଏ ଲେଖାଏ ରେଫ୍ରିଜେରେଟର ଥାଏ । କ ଗ୍ରେଟ ନ ବଡ଼ଲୋକ ସମସ୍ତଙ୍କ ଘରେ ଏହା ଦେଖିବାକୁ ମିଳିବ । ଉପରେ ଲେଖିଥିବା ଜିନିଷମାନ ଏହି ରେଫ୍ରିଜେରେଟର ମଧ୍ୟରେ ରହେ ।

ଏ ଦେଶରେ କାଗଜ ବାକ୍ସ ଖୁବ୍ ସୁନ୍ଦର ଓ ମଜବୁତ । ଦୁଧ, ଦହି, ଛେନା, ଚିନ୍ଲୀ, ଲହୁଣୀ; ଲେମ୍ବୁରସ, ଅଙ୍ଗୁରରସ ଆଦି କାଗଜ ବାକ୍ସରେ ବିକ୍ରି ହୁଏ । ତାକୁ ସାତଦିନ ଧରି ସେହି ବାକ୍ସରେ ରଖି ବ୍ୟବହାର କଲେ ବାକ୍ସ କିଛି ଖରାପ ହୁଏ ନାହିଁ । ବାକ୍ସରେ ଥିବା ଜିନିଷ ସରିଗଲେ ଫୋପାଡ଼ ଦେବାକୁ ଇଚ୍ଛା ହେବ ନାହିଁ । ଭାତ ଖିଆ ପ୍ଲେଟ, ବାଟି, କପ, ଗ୍ଲାସ ଆଦି ମଧ୍ୟ କାଗଜରେ ତିଆରି ହୋଇ ଏ ଦେଶରେ ମିଳେ । ଭୋଜି ଆଦିରେ କାଗଜ ପ୍ଲେଟ୍, କପ, ଗିଲାସ ଆଣି ଅତି ସହଜରେ ଏଠାକାର ଲୋକେ ଖିଆପିଆ ଚଳାଇ ନିଅନ୍ତି ।

—o—

## ସପ୍ତମ ଅଧ୍ୟାୟ

# ମାର୍କିନ୍ ଗୃହିଣୀର ରାନ୍ଧଣା

ରନ୍ଧାବଢ଼ା ଆମ ଦେଶରେ ଭାରି ଛନ୍ଦକୁଟିଆ କାମ । ବିଶେଷତଃ ଆମ ଦେଶ ରନ୍ଧା । ଆମ ଦେଶରେ ମାଇପିଙ୍କର ଅଧିକାଂଶ ସମୟତକ ଏହି ହାଣ୍ଡିଶାଳରେ କଟେ । ସକାଳୁ ଯଦି ଚୂଲ୍ଲୀ ଲଗିଛି ଯଦି ବଡ଼ ପରିବାର ହୋଇଥାଏ, ତେବେ ଚୂଲ୍ଲୀ ଲିଭୁ ଲିଭୁ ରାତି ବାରଟା ହୋଇଯାଏ । ସକାଳେ ଚା, ଜଳଖିଆ, ଦଶଟାରେ ଭାତ, ଡ଼ାଲି ତରକାରି,ଦିନ ତିନିଟାରେ ଜଳଖିଆ ଚା' ସନ୍ଧ୍ୟାବେଳେ ପୁଣି ଭାତ, ରୋଟି, ଡାଲି ତରକାରି ଆଦି । ପୁହ୍ଲା ଯଦି ରନ୍ଧୁଥାଏ, ତେବେ ସେ କଥା ଛାଡ଼,ନିଜେ ଯଦି ଆମ ଦେଶର ସ୍ତ୍ରୀ ଲୋକେ ରାନ୍ଧନ୍ତି, ଯାହାକି ଅଧିକାଂଶଙ୍କ ଘରେ ହୁଏ, ତେବେ ବରୁଣ ସ୍ତ୍ରୀ ଲୋକର ଜୀବନ ଗଲା । ହାଣ୍ଡି ଓ ହାଣ୍ଡିଶାଳ ନେଇ ସେ ଏତେ ବ୍ୟସ୍ତ ରହେ ଯେ ଦୁନିଆର ଆଉ କିଛି ସୁଖ ସମ୍ଭୋଗ ତା' ଭାଗ୍ୟରେ ଜୁଟେ ନାହିଁ । ଏମିତିକି ଏହି ରନ୍ଧାର ବୋଝ ତା' ମୁଣ୍ଡରେ ଏମିତି ମାଡ଼ି ବସିଥାଏ ଯେ ସେ ପଡ଼ଶା ଘରକୁ ବୁଲିବାକୁ ଯିବାକୁ ବି ବେଳ ପାଇ ନ ପାରେ । ଆମ ଦେଶରେ ରନ୍ଧାବଢ଼ାର ଯୋଗୁଁ କଟମିଟିଆ ଶିକ୍ତ ତାରି ଶିକାର ହୁଅନ୍ତି ଆମ ଦେଶର ମାଇପି ସମାଜ । ପାଶ୍ଚାତ୍ୟ ଦେଶମାନଙ୍କରେ ରନ୍ଧାବଢ଼ା ଆମ ଦେଶ ତୁଳନାରେ ଢେର ସହଜ ଓ ସୁବିଧା । କି

ଆମେରିକା, କି ଇଂଲଣ୍ଡ, କି ଫ୍ରାନ୍‌ସ ଯେଉଁ ଦେଶକୁ ଯାଅ ଦେଖିବ ସେମାନଙ୍କ ରନ୍ଧାବଢ଼ା କେତେ ସରଳ । ଆମଦେଶରେ ରନ୍ଧାବଢ଼ା ଯଦି ସରଳ ହୋଇ ପାରନ୍ତା, ତେବେ ଆମ ସ୍ତ୍ରୀ ଲୋକେ ସଂସାର ଜଞ୍ଜାଳରୁ ଟିକିଏ ଫୁରୁସତ ପାଆନ୍ତେ । ଆମ ଦେଶର ପୁରୁଷ ଲୋକେ ସ୍ୱାର୍ଥପର ଭଳି ସ୍ତ୍ରୀ ଲୋକମାନଙ୍କୁ ଏମିତି ଗଧ ଖଟଣୀରୁ ରକ୍ଷା କରି ସେମାନଙ୍କ ଜୀବନକୁ ଅପେକ୍ଷାକୃତ ସୁଖମୟ କରି ପାରନ୍ତେ । ଅନ୍ତତଃ ସେମାନେ ଏତକ ଖବର ରଖିବା ଦରକାର ଅନ୍ୟ ଦେଶ ବିଦେଶରେ ସ୍ତ୍ରୀଲୋକମାନେ ରୋଷେଇ ରନ୍ଧଣା ଘରେ କେମିତି ଖଟୁଛନ୍ତି । ଆମ ସ୍ତ୍ରୀ ସେମାନଙ୍କ ଜୀବନ ଏତେ କଷ୍ଟମୟ ନ ହୋଇ ସୁଖମୟ କେମିତି ହେବ ? ଆମେରିକା ସ୍ତ୍ରୀ ଲୋକମାନଙ୍କ ରନ୍ଧଣାକୁ ଲକ୍ଷ୍ୟକଲେ ଏ ବିଗରେ ଆମର କେତେ କଥା ଜାଣିହେବ ।

ମାର୍କିନ ଗୃହିଣୀମାନେ ନିଜ ରନ୍ଧାରେକ ହାତରେ କରନ୍ତି । ଆମ ଦେଶ ଭଳି ଚାକର ପୂଝାରୀ ସେମାନଙ୍କ ଦେଶରେ ନାହାଁନ୍ତି । ତେଣୁ ସେମାନେ ନିଜେ ନିଜେ ରାନ୍ଧିବାକୁ ବାଧ୍ୟ । ଯେଉଁମାନେ ସେ ଦେଶରେ ଖୁବ୍ ଧନୀ ପୁଞ୍ଜିପତି ସେମାନେ ହିଁ କେବଳ ଚାକର ପୂଝାରୀ ରଖନ୍ତି ଅନ୍ୟମାନେ ନୁହେଁ । ଗୋଟିଏ ଲୋକ ଯଦି ରାନ୍ଧିବା ପାଇଁ ରଖିବ, ତେବେ ସେ ହାରାହାରି ଦରମା ନେବ ମାସକୁ ଖାଇପିଇ ଦୁଇହଜାର ଟଙ୍କାରୁ ଊର୍ଦ୍ଧ୍ୱ । ସେଥିରେ ପୁଣି ଗୋରାଲୋକ ମିଳିବା କଷ୍ଟ । ଯଦି ବା ରାନ୍ଧିବା ପାଇଁ ଲୋକ ମିଳିବେ ସେମାନେ ସବୁ ନିଗ୍ରୋ । କଳା କଳା ନିଗ୍ରୋ ଲୋକ ହାତରୁ ଖାଇବା-ପାଇଁ ବହୁ ଆମେରିକାନ୍ ଲୋକ ଆଗ୍ରହ ପ୍ରକାଶ କରନ୍ତି ନି, ତେଣୁ ସେ ଦେଶର ସ୍ତ୍ରୀ ଲୋକମାନେ ନିଜ ନିଜ ରନ୍ଧଣା ନିଜେ କରନ୍ତି । କ୍ୱଚିତ୍ ଧନୀ ଲୋକଙ୍କ ଘରେ ନିଗ୍ରୋ ପୂଝାରୀ ବା ପୂଝାରୁଣୀ

ଯେଷାଇବାସ କରିବାର ଦେଖାଯାଏ । ବିଶେଷତଃ ଦକ୍ଷିଣ ଭାଗର ଯେଉଁ ସବୁ ବଡ଼ ବଡ଼ ଜମିଦାର ପରିବାର ରହନ୍ତି, ସେମାନଙ୍କ ଘରେ ନିଗ୍ରୋ ଚାକର, ଚାକରାଣୀ ଥିବା ଦେଖାଯାଏ । କାରଣ ଦକ୍ଷିଣ ଭାଗର ଲୋକମାନଙ୍କ ଭିତରେ ସାମନ୍ତବାଦୀ ଚଳଣି । ଚାକର, ଚାକରାଣୀ, ପୁଷ୍ପାଶ୍ରା ନ ହେଲେ ସେମାନେ ଚଳି ପାରନ୍ତି ନାହିଁ । ପୁଣି ସେ ସବୁ ଅଞ୍ଚଳରେ ନିଗ୍ରୋମାନେ ବେଶି ଗରିବ । ତେଣୁ ଏହି ସବୁ କାମ ପାଇଁ ବହୁତ ଲୋକ ମିଳନ୍ତି ।

ଆମେରିକାନ୍ ଘରେ ଖାଇବା ପଦ୍ଧତି ଓ ରାନ୍ଧିବା ପଦ୍ଧତି ଆମଠାରୁ ବହୁତ ଅଲଗା । ଆମ ଓ ତାଙ୍କ ଭିତରେ ତଫାତ୍ ହେଉଛି ସେମାନେ ଅଧିକ ପୁଷ୍ଟିକର ଖାଦ୍ୟ ଖାଆନ୍ତି, ଆମେ କମ୍ ପୁଷ୍ଟିକର ଖାଦ୍ୟ ଖାଉଁ । ଖାଦ୍ୟ ସହଜରେ ପେଟ ଭିତରକୁ ପଶିଯିବା ପାଇଁ ଲଙ୍କା ଓ ମସଲା ଆଦି ଅଧିକ ପରିମାଣରେ ଆମେ ଖାଉଁ । ଏହି ମସଲା ଯେ ଆମ ସ୍ୱାସ୍ଥ୍ୟର କିଛି ଉପକାର ନ କରି ଅପକାର କରେ ଏହା ଆମେ ଖାଇଲାବେଳେ ଭୁଲିଯାଉ । ଗୋଟିଏ ମାର୍କିନ ପରିବାରରେ ସେମାନଙ୍କ ଖାଇବା ରୀତି ଦେଖିଲେ, ଆମେ ଆମ ଖାଇବା ରୀତି ସହିତ ସେଗୁଡ଼ିକୁ ତୁଳନା କରି ପାରିବା ।

ସାଧାରଣ ଦିନରେ ମାର୍କିନ୍ ସ୍ତ୍ରୀ ଲୋକ ବେଶ୍ ସକାଳୁ ଶଯ୍ୟା ତ୍ୟାଗ କରେ । ସ୍ୱାମୀ ଓ ପିଲାମାନେ ମଧ୍ୟ ସେହି ସମୟରେ ଉଠନ୍ତି । ଉଠି ପ୍ରଥମେ ଦାନ୍ତ ଘଷିସାରି ପ୍ରତ୍ୟେକେ ଗିଲାସେ ଲେଖାଏଁ ଥଣ୍ଡା ଫଳ ରସ ପିଅନ୍ତି । ଫଳରସ ଭିତରେ ଅଙ୍ଗୁର ରସ, କମଳାଲେମ୍ବୁ ରସ, ସେଉ ରସ, ସପୁରିରସ ଆଦି ପ୍ରଧାନ । ରସଗୁଡ଼ିକ ଅତି ସୁସ୍ୱାଦୁ ଓ ପୁଷ୍ଟିକର । ମୂଲ୍ୟ ବି ଅଧିକ ନୁହେଁ, ବେଶ୍ ଶସ୍ତା । କି ଗରିବ, କି ଧନୀ, ପ୍ରତିଦିନ ସକାଳୁ ଉଠି ଫଳ

ରସ ପିଇବା ଏକ ଅଭ୍ୟାସ । ଫଳରସ ପିଇସାରି ପୁରୁଷ ଲୋକ-ମାନେ ପ୍ରାତଃ କର୍ମ କରିବାକୁ ଯାଆନ୍ତି । ସ୍ତ୍ରୀ ଲୋକମାନେ ସକାଳ ଜଳଖିଆ ତିଆରି କରନ୍ତି । ସ୍ୱାମୀର ମଧ୍ୟାହ୍ନଭୋଜନ ପାଇଁ ଖାଦ୍ୟ ତିଆରି କରି ସ୍ୱାମୀ ସଙ୍ଗରେ ନେବାପାଇଁ ରଖନ୍ତି ।

ଟାଛଡ଼ା ସକାଳ ଜଳଖିଆ ପାଇଁ ଟୋଷ୍ଟ, ଅଣ୍ଡାର ଆମଲେଟ୍, ଅଣ୍ଡାର ପୋଚ୍ ଆଦି ତିଆରି ହୁଏ । ତା ସହିତ ଦୁଧ, ଚା, କଫି । ପ୍ରାତଃଭୋଜନ ସାଧାରଣତଃ ଡାଇନିଂ ରୁମରେ ଡିନର ଟେବୁଲ ଉପରେ ହୁଏ । ମାକିନ ଗୃହିଣୀ ଆଗ ପିଲ୍ଲାକେ ଡିନର ଟେବୁଲ ଉପରେ ସବୁ ଖାଦ୍ୟ ସଜାଇ ଦିଏ । ସ୍ୱାମୀ ଓ ପିଲାମାନେ ପ୍ରସ୍ତୁତ ହୋଇ ବ୍ରେକ୍‌ଫାଷ୍ଟ ବା ଜଳଖିଆ ଟେବୁଲ୍ ପାଖରେ ଆସିଲା ବେଳକୁ ସବୁ ଠିକ୍ । ବାପ, ମା', ପୁଅ ଝିଅମାନେ ଗୋଟିଏ ଟେବୁଲ ଉପରେ ବସି ଖାଇବା ନିୟମ । ପରସିବା ପାଇଁ ଚାକର ବା ପୂଝାରି ନାହିଁ । ମାର୍କିନ ଗୃହିଣୀର ପରସିବା ହେଲା ପ୍ରଧାନ କାମ । ବେଳେବେଳେ ପରସିବା ଦରକାର ପଡ଼େନା, କାରଣ ସବୁ ଖାଦ୍ୟ ପଦାର୍ଥ ସଜଡ଼ା ହୋଇ ଟେବୁଲର ମଧ୍ୟ ଭାଗରେ ଥୁଆ ହୋଇଥାଏ । ଯାହା ଯା ଇଚ୍ଛା, ସେ ନିଜେ ନେଇ ଖାଏ ।

ସମସ୍ତେ ଖାଇ ବସିଲା ବେଳକୁ ପ୍ଲେଟ ସବୁ ଥୁଆ ହୋଇଯାଏ ଚାମଚ ଫର୍କ ଆଦି ସହିତ । ଖାଇଲା ପୂର୍ବରୁ ନିଜ ନିଜ ଜଙ୍ଘ ଉପରେ ତଉଲିଆ ବା କାଗଜ ରୁମାଲ ପକାନ୍ତି, କାରଣ ଖାଉଖାଉ କିଛି ଖାଦ୍ୟ ପଦାର୍ଥ ନିଜ ପୋଷାକ ପତ୍ର ଉପରେ ପଡ଼ି ସେଗୁଡ଼ିକୁ ଖରାପ କରି ଦେଇପାରେ । ତାପରେ ପ୍ରତ୍ୟେକେ ନିଜ ନିଜ ପ୍ଲେଟରେ କିଛି କିଛି ଦୁଧ, ଚିନି ଓ ସିରିଏଲ୍ ନିଅନ୍ତି । ସିରିଏଲ୍ ସହିତ କିଛି କିଛି କଦଳୀ କାଟି ପକାଇ ଗୋଳାନ୍ତି ଓ ତା'ପରେ ଖାଆନ୍ତି । ଏହା ହେଲା ବ୍ରେକ୍‌ଫାଷ୍ଟ ବା ସକାଳ ଜଳଖିଆର ପ୍ରଥମ କୋର୍ସ ।

ସେମାନଙ୍କ ସିରିଏଲ୍ ଗୋଟିଏ ମଜା ଜଳଖିଆ । ସିରିଏଲ୍ ଭିତରେ କର୍ଣ୍ଣଫ୍ଲାକ୍ସ, ମୁଢ଼ି, ଖଇ, ଚିନିଦିଆ ମୁଢ଼ି,ଚିନିଦିଆ ଖଇ ବା ଉଖୁଡ଼ା ହେଲ ପ୍ରଧାନ । ଆମ ଲୋକଙ୍କର ସାଧାରଣତଃ ଧାରଣା ଆମେରିକାରେ ଖଇ କି ମୁଢ଼ି ମିଳେ ନି । କିନ୍ତୁ ତା’ ଠିକ୍ ନୁହେଁ, ସେମାନଙ୍କ ଦେଶରେ ମୁଢ଼ି ମିଳେ । ସେଗୁଡ଼ିକୁ କହନ୍ତି ରାଇସ୍-କ୍ରିସ୍ପ । ରାଇସ୍ କ୍ରିସ୍ପ ଖାଇବାକୁ ଭାରି ମଜା ଲାଗେ । ଏହି ମୁଢ଼ି ବଡ଼ଆ ବଡ଼ଆ ବାକ୍ସରେ ଭରତି ହୋଇ ବିକ୍ରୀ ହୁଏ । ଏହି ମୁଢ଼ି ତିଆରି କରି ସେ ଦେଶରେ କେତେ କମ୍ପାନୀ କୋଟିପତି ହୋଇ ଯାଇଛନ୍ତି । ସେହିସବୁ କୋଟିପତି ଭିତରୁ କେଲଗ କମ୍ପାନୀ ଗୋଟିଏ । କର୍ଣ୍ଣଫ୍ଲେକ୍ସ, ମୁଢ଼ି ଆଦି ତିଆରି କରି ପୃଥିବୀ ପ୍ରସିଦ୍ଧ । ଆମେରିକାର ମୁଢ଼ି ଆମ ଦେଶ ଭଳି ଚାଉଳରୁ ତିଆରି ହେଲେହେଁ,ଏହା ଦେଖିବାକୁ ଈଷତ୍ ନାଲି ଓ ଚେପଟା ଚେପଟା । ଏଥିରେ ନାନାପ୍ରକାର ଭିଟାମିନ୍ ଓ ଧାତବଲବଣ ଦିଆଯାଇଥାଏ ଏହାର ପୁଷ୍ଟିକାରିତା ବଢ଼ାଇବା ପାଇଁ । ଦୁଧରେ ପକାଇଲେ ଏହା ବେଶ୍ ନରମ ଓ ସୁସ୍ୱାଦୁ ହୁଏ । ଖାଲି ଚୋବାଇ ଖାଇଲେ ପାଟିକୁ ସାମାନ୍ୟ ମିଠା ଲାଗେ । ଆମ ଦେଶ ମୁଢ଼ି ଭଳି ଏତେ ଲୁଣିଆ ଲାଗେନି । ଆମେ ଆମେରିକାରେ ପହଞ୍ଚିଲା ପରେ ପୁଅ ବାବୁଲିର ଯଦି କୌଣସି ଖାଦ୍ୟ ପ୍ରିୟ ହୋଇ ଯାଇଥିଲା, ତେବେ ସେ ହେଉଛି ଏହି ମୁଢ଼ି । ମୁଢ଼ି, ଦୁଧ ଓ କଦଳୀ ହେଲା ତାର ପ୍ରଧାନ ସକାଳ ଜଳଖିଆ । ସେମାନଙ୍କ ଦେଶର ଖଇ ଦେଖିବାକୁ ଆମ ଦେଶ ମୁଢ଼ି ଭଳି, କିନ୍ତୁ ଅଲଣା । ଦୁଧରେ ପକାଇଲେ ଆମ ଖଇ ଭଳି-ନରମ ହୋଇଯାଏ ।

ଆମେରିକାର ଲୋକେ ଏହି ଯେଉଁ ସିରିଏଲ୍ ସହିତ ଦୁଧ ମିଶାଇ ଖାଆନ୍ତି, ସେ ଦୁଧ ଗରମ ଦୁଧ ନୁହେଁ, ଥଣ୍ଡା ଦୁଧ । ସେମାନେ ବଜାରରୁ ଯେଉଁ ପ୍ଲାଷ୍ଟିକ ବୋତଲରେ ଦୁଧ କିଣି ଆଣି-

ଥାନ୍ତି, ତାକୁ ରେଫ୍ରିଜେରେଟରରେ ରଖି ଦେଇଥାନ୍ତି । ସେହି ରେଫ୍ରିଜେରେଟରରୁ ସିଧା ସଳଖ କାଢ଼ିବେ । ମୁଢ଼ି ବା କର୍ଣ୍ଣଫ୍ଲେକ୍ସ ସହିତ ଗୋଳାଇ ଖାଇବେ । ଗରମ କରିବା ଦରକାର ନାହିଁ । ତୁମେ ଯଦି ଗରମ କରି ଖାଇବ, ତେବେ ସେମାନେ ହସିବେ, କେତେକ ବି ଆଶ୍ଚର୍ଯ୍ୟ ହେବେ ।

ସେମାନଙ୍କ ସିରିଅେଲ୍ ଖିଆ ସରିଲେ ଆରମ୍ଭ ହୁଏ ଦ୍ୱିତୀୟ କୋର୍ସ । ଦ୍ୱିତୀୟ କୋର୍ସ ଭିତରେ ହେଉଛି ଟୋଷ୍ଟ ଓ ଆମଲେଟ୍ ବା ପୋଚ୍ । ଏହା ଗରମ ଗରମ ଚୂଲି ଉପରୁ ଆସିଥାଏ । ଟୋଷ୍ଟ ଦେହରେ ଲହୁଣୀ ଲଗାଇ ଖାଆନ୍ତି । କେତେକ ଘରିବାରରେ ସିଝା ଅଣ୍ଡା ବା ହାଫ୍ ବଏଲ୍ଡ୍ ଅଣ୍ଡା ଖାଇବା ଦେଖାଯାଏ । କେତେକ ମଧ୍ୟ ଫ୍ରେଞ୍ଚଟୋଷ୍ଟ କରିବା ଦେଖାଯାଏ । ଫ୍ରେଞ୍ଚଟୋଷ୍ଟ ଖାଇବାକୁ ଭାରି ମଜା ଲାଗେ । ଆମେରିକାରେ ପହଞ୍ଚି ମୋତେ ଏହି ଫ୍ରେଞ୍ଚଟୋଷ୍ଟ ଖାଇବାକୁ ଓ ତିଆରି କରିବାକୁ ଭାରି ଭଲ ଲାଗୁଥିଲା । ଅଣ୍ଡାକୁ ଭାଙ୍ଗିଦେଇ ଏହାର ହଳଦିଆ ଅଂଶକୁ ଅଲଗା କର । ଅଣ୍ଡା ଫେଣ୍ଟା ଯନ୍ତ୍ର ସାହାଯ୍ୟରେ ଏହି ହଳଦିଆ ଅଂଶକୁ ଭଲ ଭାବରେ ଫେଣ୍ଟି ଦିଅ । ସେଥିରେ ସାମାନ୍ୟ ଲୁଣ ମିଶାଅ । ସେହି ଅଣ୍ଡାରେ ସ୍ଲାଇସ ବା କଟା ହୋଇଥିବା ପାଉଁରୁଟି ଖଣ୍ଡିଏ ଖଣ୍ଡିଏ ବୁଡ଼ାଇ ତାୱାରେ ଭାଜିନିଅ । ଭାଜିବା ପୂର୍ବରୁ ତାପରେ କିଛି ଲହୁଣୀ ପକାଇଦିଅ । ଖୁବ୍ ଅଳ୍ପ ସମୟ ଭିତରେ ପାଉଁରୁଟିର ଦୁଇ ପାଖରେ ଅଣ୍ଡାର ଏକ ଲେପ ବସିଯାଇ ସୁନ୍ଦର ଦିଶିବ । ଏହାକୁ ଖାଅ, ଦେଖିବ ଭଲ ସୁସ୍ୱାଦୁ । ଏହାକୁ କହନ୍ତି ଫ୍ରେଞ୍ଚଟୋଷ୍ଟ । ମୁଁ ଏହି ଫ୍ରେଞ୍ଚଟୋଷ୍ଟ କରିବା ଯେଉଁ ଦିନଠାରୁ ଶିଖିଲି, ଆମ ଘରେ ପିଲାମାନଙ୍କର ସବୁ ବେଳେ ଜିଦ୍ ସେମାନେ ଖାଲି ଟୋଷ୍ଟ ଖାଇବେନି, ଫ୍ରେଞ୍ଚଟୋଷ୍ଟହିଁ ଖାଇବେ । ଅନ୍ୟ ଦିନମାନଙ୍କରେ ସବୁଦିନେ ସକାଳୁ ଏହାକୁ

କରିବାକୁ ବେଳ ମିଳେ ନାହିଁ, ଶନିବାର, ରବିବାର ଓ ଛୁଟି ଦିନ ମାନଙ୍କରେ ଏହା ନ ହେଲେ ନ ଚଳେ । ବେଳେବେଳେ ମାର୍କିନ ଗୃହିଣୀମାନେ ଜଳଖିଆ ପାଇଁ ଟୋଷ୍ଟ ନ କରି ଏକ ପ୍ରକାର ଚକୁଳି ପିଠା କରନ୍ତି, ଏହାକୁ କହନ୍ତି ଓ୍ୱାଫଲ୍ । ଏହା ହେଉଛି ଏକ ପ୍ରକାର ଅଟା ଚକୁଳି । ଅଟାକୁ ପାଣିରେ ଗୋଳାଇ, ଓ୍ୱାଫଲ୍ ଯନ୍ତ୍ରରେ ଢାଳି ଦେଇ ଚୁଲିରେ ବସାଇ ଦେଲେ, ଏଇ ଅଟା ଚକୁଳି ହୋଇଯାଏ । ଏହାର ଉପର କଟା କଟା । ଖାଇବାକୁ ଖୁବ ଭଲ ଲାଗେ । ଏହାକୁ ଆମେ କେବେ ଘରେ କରିନୁ । ଆମେରିକାନ୍ ବନ୍ଧୁ ଘରେ ବିଶେଷତଃ ଆମେ ନ୍ୟୁଜର୍ସିରେ ଡୋନର ପରିବାରରେ ଅବସ୍ଥାନ କରୁଥିବା ବେଳେ ମିସେସ୍ ଡୋନର ଏହା କରି ଆମକୁ ଖାଇବାକୁ ଦେଇଛନ୍ତି । ଏହି ଚକୁଳି ପିଠା ଦେଖିବାକୁ ଖୁବ ସୁନ୍ଦର । ଏଥିରେ ଚଉଖୁଣ୍ଟିଆ କଟା କଟା ଦାଗ ଥାଏ । ଓ୍ୱାଫଲ୍ ଯନ୍ତ୍ରରେ ଏହି ଦାଗ ହୋଇଯାଏ । ଏହି ସାଦା ଓ୍ୱାଫଲ୍‌କୁ ଗୁଡ଼ ଚକୋଲେଟ୍ ଓ୍ୱାଫଲ ବି ଅଛି । ଏହି ଓ୍ୱାଫଲ୍‌ରେ ଚକୋଲେଟ, ଦୁଧ, ଅଣ୍ଡା, ଆଦି ଅଟା ସହିତ ଗୋଳା ଯାଇଥାଏ । ଏହାକୁ ଗରମ ଗରମ ଖାଇବା କଥା । ସାଧାରଣ ଦିନମାନଙ୍କରେ ମାର୍କିନ ଗୃହିଣୀ-ମାନେ ଏହି ଓ୍ୱାଫଲ୍ କରନ୍ତି ନାହିଁ । ଛୁଟି ଦିନମାନଙ୍କରେ କେବେ କେମିତି ମନ ହୋଇଗଲେ ଏହାକୁ କରି ବସନ୍ତି ।

ପ୍ରାତଃ ଭୋଜନର ବିଶେଷ କୋର୍ସପରେ ଚା କଫିର ପର୍ବ । ଆମେରିକାନ୍‌ମାନେ ଚା ଅପେକ୍ଷା କଫିକୁ ଅଧିକ ଆଦର କରନ୍ତି । କେଉଁଠି କେଉଁଠି ସେଥିପାଇଁ ଇନ୍‌ଷ୍ଟାଣ୍ଟ କଫିର ବ୍ୟବହାର ହେଲାବେଳେ ଅନ୍ୟଠି କଫିମଞ୍ଜିର ଗୁଣ୍ଡକୁ ପାଣିରେ ସିଝାଇ କଫି ତିଆରି କରନ୍ତି । ଏଥିପାଇଁ ନାନା ପ୍ରକାର କଫି ପାରକୋଲେଟର ବ୍ୟବହୃତ ହୁଏ । ଆମେରିକାନ୍ ମାନଙ୍କ ମଧ୍ୟରୁ ଅନେକେ କଫିରେ

ଦୁଧ ନ ପକାଇ କଳା କଫି ପିଅନ୍ତି । କଫିରେ ଦୁଧ ପକାଇଲେ ସାଧାରଣ ଦୁଧ ପକାନ୍ତି ନାହିଁ । ସେମାନେ କଫିରେ ଦୁଧ ପରିବର୍ତ୍ତରେ ପକାନ୍ତି କ୍ରିମ୍ । କ୍ରିମ୍ ହେଲା ସରଦୁଧ । କେତେ ପ୍ରକାର କ୍ରିମ୍ ଅଛି । ଲାଇଟ୍ କ୍ରିମ୍ ଓ ହେଭିକ୍ରିମ୍ । ସେଥିରୁ ସାମାନ୍ୟ ଟିକିଏ ପକାଇଦେଲେ କଫି ବେଶ୍ ଧଳା ଦିଶେ । କଫିରେ ଦୁଧ ପକାଯାଏ, ସେମାନଙ୍କର ଧାରଣାନାହିଁ । ସେମାନଙ୍କର ଯୁକ୍ତି ଯେ, ରେଫ୍ରିଜେରେଟରରୁ କାଢ଼ିବେ, କଫିରେ ଢ଼ାଳିବେ, ଦୁଧ ଢ଼ାଳୁଥିଲେ ବେଶି ପରିମାଣରେ ଦୁଧ ଦେବାକୁ ପଡ଼ନ୍ତା, ଫଳରେ କଫି ଥଣ୍ଡା ହୋଇଯାଆନ୍ତା । କ୍ରିମ୍ ପକାଇଲେ ଅଳ୍ପ ଦରକାର ହୁଏ, ତେଣୁ କଫି ଥଣ୍ଡା ହୋଇଯାଏ ନା ।

ସେ ଦେଶରେ ଚା'ର ଯେ ବ୍ୟବହାର ନାହିଁ ତା ନୁହେଁ । ବହୁ ଆମେରିକାନ୍ ଅଛନ୍ତି, ସେମାନେ କଫି ନ ଖାଇ ଚା ଖାଆନ୍ତି । ଚା ଗୋଟିଏ ପ୍ରକାର ପାତଳ କାଗଜରେ ଗୁଣ୍ଡା ହୋଇ ମିଳୁଥାଏ । ଗୋଟିଏ କପ୍ ପାଇଁ ଯେତିକି ଚା ଦରକାର, ସେତିକି ଏହି ଖୋଳରେ ଥାଏ । ଏହି ଖୋଳର ଗୋଟିଏ ମୁଣ୍ଡରେ ସୂତାଖିଅଟିଏ ଲାଗିଥାଏ । କପ୍‌ରେ ଗରମ ପାଣି ଢ଼ାଳି ଏହି ଚା ପୁଡ଼ିଆ ଗୋଟିଏ ପକାଇ ଦେଲେ ସଙ୍ଗେ ସଙ୍ଗେ ଗରମପାଣି ଚା ରଙ୍ଗର ହୋଇଯାଏ କିଛି ସମୟପରେ ସୂତାକୁ ଧରି କାଗଜ ଖୋଳଟିକୁ ବାହାର କରି ଆଣି ଫୋପାଡ଼ ଦିଅ । କପ୍‌ରେ ଦୁଧ, ଚିନି ପକାଇ ଖାଅ । ଏ ଚା ବେଶ୍ ସୁସ୍ୱାଦୁ । ଛଣାଛଣିର ଦରକାର ନାହିଁ । ମାର୍କିନ୍ ଗୃହିଣୀଙ୍କୁ ସବୁ ସୁବିଧା । ଇନ୍‌ଷ୍ଟାଣ୍ଟ କଫିଭଳି ଇନ୍‌ଷ୍ଟାଣ୍ଟ ଚା, ମଧ୍ୟ ସେ ଦେଶରେ ମିଳେ । ଏହି ଚା କୁ ଗରମ ପାଣିରେ ଗୋଳାଇ ଦେଲେ ଚା ହୋଇଯାଏ । ଛଣାଛଣି ଦରକାର ନାହିଁ । ଦୁଧ, ଚିନି ପକାଇ ଖାଆନ୍ତି ।

ଆମେରିକାନ୍ ପରିବାରରେ ଜଳଖିଆ ପର୍ବ ସରିଲେ, ମାର୍କିନ ଗୃହିଣୀ ନିଜ ସ୍ୱାମୀ ଓ ସ୍କୁଲକୁ ଯାଉଥିବା ପିଲା ନେବା ପାଇଁ ମଧ୍ୟାହ୍ନ ଭୋଜନ ତିଆରି କରେ । ମଧ୍ୟାହ୍ନ ଭୋଜନ ପାଇଁ ସ୍ୱାମୀ, କି ସ୍କୁଲରେ ପଢ଼ୁଥିବା ପିଲାମାନେ ଘରକୁ ଆସନ୍ତି ନାହିଁ । ସେମାନେ ଘରୁ ଗଲାବେଳେ ସଙ୍ଗରେ ମଧ୍ୟାହ୍ନ ଭୋଜନ ପାଇଁ ଖାଦ୍ୟ ପଦାର୍ଥ ନେଇ ଯାଇଥାନ୍ତି । ସ୍କୁଲରେ କି କାରଖାନାରେ କି ଅଫିସରେ ସେମାନେ ଯେଉଁଠି ପଢ଼ନ୍ତି ବା କାମ କରନ୍ତି ସେଠି ନେଇଥିବା ଖାଦ୍ୟପଦାର୍ଥକୁ ଖାଇ ମଧ୍ୟାହ୍ନ ଭୋଜନ ସମାପ୍ତ କରନ୍ତି । ସେମାନଙ୍କ ମଧ୍ୟାହ୍ନ ଭୋଜନ ବେଶ୍ ହାଲୁକା, କେତେବେଳେ ଆମ ଦେଶଭଳି ପେଟପୂରା ନୁହେଁ । ପେଟପୂରା ମଧ୍ୟାହ୍ନ ଭୋଜନ ଖାଇଦେଲେ ଦେହ ମାଡ଼ା ମାଡ଼ା ଲାଗେ, ଝିମେଇଲା ଲାଗେ । କାମ କରି ହୁଏ ନାହିଁ । ତେଣୁ ସେ ଦେଶର ଲୋକେ ଏହି ହାଲୁକା ମଧ୍ୟାହ୍ନ ଭୋଜନ କରିବାକୁ ଅଧିକ ପସନ୍ଦ କରନ୍ତି । ସେଣ୍ଡଉଇଚ ହେଲା ସେମାନଙ୍କ ପ୍ରଧାନ ମଧ୍ୟାହ୍ନ ଭୋଜନ । ସେଣ୍ଡଉଇଚ୍ ପୁଣି ବିଭିନ୍ନ ପ୍ରକାରର ଅଛନ୍ତି । ଯା'ର ଯେଉଁ ସେଣ୍ଡଉଇଚ୍ ମନହେଲା ସେ ସେଇ ସେଣ୍ଡଉଇଚ୍ ଖାଇଲା । ସେଣ୍ଡଉଇଚ୍ ହେଉଛି ଦୁଇଖଣ୍ଡ ସ୍ଲାଇସ୍ ପାଉଁରୁଟି ଭିତରେ ଅଣ୍ଡା, ମାଂସ, ମାଛ ଆଦି ରଖି ଖାଇବା ପଦାର୍ଥ । ଗୋଟାଏ କିମ୍ବା ଦୁଇଟି ସେଣ୍ଡଉଇଚ୍ ହୋଇଗଲେ ସେମାନଙ୍କର ମଧ୍ୟାହ୍ନ ଭୋଜନ ହୋଇଗଲା ।

ସେଣ୍ଡଉଇଚ୍‌ର ପ୍ରକାର ଭେଦ ଏଥିଭିତରେ ଦିଆଯାଇଥିବା ପଦାର୍ଥନେଇ ଅଲଗା ଅଲଗା କେଉଁଠି ଦୁଇଖଣ୍ଡ ପାଉଁରୁଟି ଭିତରେ ସିଝା ମାଂସଦିଆ ଯାଇଛି ତ କେଉଁଠି ଟୁନ୍, ଫିସ୍ ଦିଆ ଯାଇଛି । କେଉଁଠି ଛେନା ଦିଆଯାଇଛି । କିଏ କିଏ ପାଉଁରୁଟି ଖଣ୍ଡ ଭିତରେ ଅଣ୍ଡା ଆମଲେଟ୍ ଦିଅନ୍ତି, ତ କିଏ କିଏ ଅଣ୍ଡାପୋଚ୍ ଦିଅନ୍ତି ।

ଓଲ୍ଡର ମହାପାଠ ଓ ମୋ ଝିଅ ସ୍କୁଲକୁ ଗଲାବେଳେ ସାଉଁରୁ ଭିତରେ ଅଣ୍ଡା ଆମଲେଟ୍ କି ପୋଚ ଦେଇ ମୁଁ ସେଣ୍ଡୁଇଚ୍ ତିଆରି କରେ । ଆମ ପରିବାରରେ ଅନ୍ୟ ସେଣ୍ଡୁଇଚ୍‌କୁ କେହି ପସନ୍ଦ କରନ୍ତି ନାହିଁ । କିନ୍ତୁ ମାର୍କିନ୍ ପରିବାରରେ ଅଣ୍ଡା ସେଣ୍ଡୁଇଚ୍ ଖୁବ୍ କମ୍ । ଆମକୁ ଟୁନଫିସ୍ ବା ମାଂସ, ଛେନା ସେଣ୍ଡୁଇଚ୍ ଗନ୍ଧାଏ, ଭଲ ଲାଗେ ନା ।

ସମସ୍ତେ ଯେ ମଧ୍ୟାହ୍ନ ଭୋଜନ ପାଇଁ ଘରୁ ଖାଦ୍ୟ ନେଇଥାନ୍ତି ତା ନୁହେଁ । ଅନେକ ସ୍କୁଲ, କଲେଜ ବା କାରଖାନାରେ ଥିବା ରେଷ୍ଟୁରାଣ୍ଟରୁ ଖାଆନ୍ତି । ସେସବୁ ଯାଗାରେ ସେମାନେ ମଧ୍ୟାହ୍ନ ଭୋଜନ ପାଇଁ ପ୍ରଥମତଃ ସୁପ୍ ଖାଆନ୍ତି । ସୁପ୍ ପରେ ହଟ୍‌ଡଗ୍, ହେମ୍‌ବର୍ଗର ଆଦି ଖାଦ୍ୟ ଖାଆନ୍ତି । ହଟ୍‌ଡଗ୍ (ଗରମ କୁକୁର ନୁହେଁ ହେମବର୍ଗର ଆଦି ମାଂସରେ ତିଆରି । ଏହା ତିଆରି ହୋଇ ଦୋକାନରେ ବିକ୍ରୟ ହେଉଥାଏ । ଏହାକୁ ଦୋକାନରୁ ଆଣି ଚୂଲାରେ ପକାଇ ଭଜା ହୋଇଯାଏ । ଏଗୁଡ଼ିକ ଅଧିକାଂଶ ଗୋରୁ ମାଂସରୁ ତିଆରି ସେଥିପାଇଁ ଆମେ ହଟ୍‌ଡଗ୍, ହେମ୍‌ବର୍ଗର କି ଫ୍ରାଙ୍କ ଫର୍ଟର ପାଖ ମାଡ଼ୁ ନ ଥିଲୁ ।

ମଧ୍ୟାହ୍ନ ଭୋଜନରେ ସେଣ୍ଡୁଇଚ୍ ବ୍ୟତୀତ ଫଳ ଖାଇବା ଗୋଟାଏ ଅଭ୍ୟାସ । ସେଓ, ନାସପାତି, କମଳା, କଦଳୀ, ଅଙ୍ଗୁର ହେଲା ଏହି ଫଳଭିତରେ ପ୍ରଧାନ । ତା' ପରେ କପେ ଗୁ କି କଫି । ଏଇ ହେଲା ସେମାନଙ୍କ ମଧ୍ୟାହ୍ନ ଭୋଜନ । ମାର୍କିନ୍ ଗୃହିଣୀକୁ ଏଥିପାଇଁ ବିଶେଷ ମୁଣ୍ଡ ଖେଳାଇବାକୁ ପଡ଼େନା । ସେଣ୍ଡୁଇଚ୍ କରିଦେଇ ଦେଲେ ତା' କାମ ତୁଟିଗଲା । କାରଖାନା, ସ୍କୁଲ ଆଦିରେ ଯାନ୍ତ୍ରିକ ଦୋକାନ ବସିଛି, ପଇସା ପକାଇ ଦେଲେ ଯନ୍ତ୍ରରୁ ଗରମ ଗରମ ଗ୍ଲ କଫି ଆଦି ଗଳି ଆସିଲା ।

ମାର୍କିନ୍ ପରିବାରର ପ୍ରଧାନ ଖାଦ୍ୟ ହେଲା ଡିନର । ମର୍କିନ୍ ଗୃହିଣୀକୁ ଯା' କିଛି ପରିଶ୍ରମ କରିବାକୁ ପଡ଼େ, ତାହା ଏହି ଡିନର ତିଆରି ପାଇଁ । ଡିନର ସାଧାରଣତଃ ସନ୍ଧ୍ୟା ଛଟା ବେଳେ ଖିଆଯାଏ । ସ୍ୱାମୀ ଓ ପିଲାମାନେ ଘରକୁ ଫେରିବାର କିଛି ସମୟ ପୂର୍ବରୁ ମାର୍କିନ୍ ଗୃହିଣୀ ପ୍ରସ୍ତୁତ ହୋଇଯାଏ ଡ଼ିନର ତିଆରି ପାଇଁ । ଡ଼ିନର ତିଆରି ବିଶେଷ ପରିଶ୍ରମ ଯୁକ୍ତ ନୁହେଁ । କାମ ଖୁବ ହାଲୁକା ।

ସାନ୍ଧ୍ୟ ଭୋଜନ ବା ଡ଼ିନର ଗୁଡ଼ିଏ କୋର୍ସ ଯୁକ୍ତ । ପ୍ରଥମ କୋର୍ସହେଲା ସୁପ୍ । ସୁପ୍ ବିଭିନ୍ନ ପ୍ରକାରର ଅଛି । ଅଧିକାଂଶ ସୁପ୍ ଆଗରୁ ରନ୍ଧାହୋଇ ଟିଣରେ ପେକ୍ ହୋଇ ବଜାରରେ ମିଳେ । ସୁପ୍‌ଥିବା ଟିଣ ଆଣି କାଟି ପକାଇ କଟେଇରେ ଗରମ କରିଦେଇ ତା ପରେ ପ୍ଲେଟରେ ବାଢ଼ିଦେବେ । ବିଶେଷ ପରିଶ୍ରମ ନାହିଁ । ଏହି ରନ୍ଧା ସୁପ୍ ବିଭିନ୍ନ କିସମର ଅଛି । ଯା'ର ଯେଉଁ ସୁପ ଖାଇବାକୁ ଇଚ୍ଛା ହେଲା, ସେ ସେହି ସୁପ୍ କିଣି ଆଣି ଖାଇଲା । ସୁପର ପ୍ରଧାନ ଅଂଶ ହେଲା ଡାଲି । ମଶୁର ଡାଲି, ମଟର ଡାଲି ସେମାନଙ୍କ ଦେଶରେ ବେଶି ପ୍ରଚଳିତ । ଏହାକୁ ସିଝାଇ ପାଣିଆ ପାଣିଆ କରି ପ୍ଲେଟରେ ଢାଳିଦେଲେ ଏ ହେଲା ଏକ ପ୍ରକାର ସୁପ୍ । ଆମର ଡାଲିପାଣି ଯାହା ସେମାନଙ୍କର ସୁପ୍ ପ୍ରାୟ ହେଇଯିବ । ଏ ହେଲା ଡାଲି ସୁପ୍ । ତା ଛଡ଼ା ନାନା ପ୍ରକାର ପନିପରିବା ଓ ମାଂସ ସୁପ୍ ରହିଛି । ଶାମୁକାରୁ ତିଆରି ସୁପ୍ ମଧ୍ୟ ଖୁବ ଲୋକପ୍ରିୟ । ନାନାପ୍ରକାର ଜନ୍ତୁରୁ ତିଆରି ସୁପ୍ ମଧ୍ୟ ବେଶ୍ ପ୍ରଚଳିତ । ଖାଲି ଆଳୁରୁ ମଧ୍ୟ ସୁପ ତିଆରି ହୁଏ । ସମୁଦ୍ରର ମୁକ୍ତା ଶାମୁକା ସୁପ୍ ଖୁବ୍ ଲୋକପ୍ରିୟ । ପନିପରିବା ସୁପ୍ ଭିତରେ କେରଟ୍ ବିଟ୍, ପିଆଜ, ନାନା ଜାତିର ବିନ୍, ଟମାଟୋ ଆଦି ପନି ପରିବା ବେଶି ବ୍ୟବହୃତହୁଏ ।

ଆମିଷ ସୁପ୍ ଭିତରେ ଶାମୁକା, ମୁକ୍ତା ଶାମୁକା, କୁକୁଡ଼ା ନାନା ଜାତିର ମାଛ ଓ ଅନ୍ୟାନ୍ୟ ମାଂସ ପ୍ରଧାନ । ଏହି ସୁପ୍ ଏମିତି ସିଝ ହୋଇଯାଇଥାଏ ଯେ ସେଥିରେ ଫଳ ପନିପରିବାର ଚିହ୍ନ ବର୍ତ୍ତି ବ ନ ଥାଏ । ଭିନର ଖାଇବା ପୂର୍ବରୁ ଏହି ସୁପ୍‌କୁ ଗ୍ଲାସରେ ନେଇ ଖାଇ ସେମାନେ ଖାଦ୍ୟବହ ନଳୀକୁ ସଫା କରନ୍ତି ।

ଏହି ଫାଷ୍ଟ କୋର୍ସ ସୁପ୍ ସରିଲେ ଆସେ ମାଂସ ରୋଷ୍ଟ, ଓ ପନିପରିବା ସିଝା । ଏ ହେଲା ସେକେଣ୍ଡ କୋର୍ସ ଓ ପ୍ରଧାନ କୋର୍ସ । ଏଥିରେ ମାଂସ ପ୍ରଧାନ ଅଂଶ । ପନିପରିବା ସିଝା ଓ ପାଉଁରୁଟି ଖଣ୍ଡ ଗୌଣ ଭୂମିକା ଗ୍ରହଣ କରେ । ମାଂସ ଭିତରେ ବିଭିନ୍ନ ପ୍ରକାରର ଅଛି । କିଏ ଚିକେନ୍ ରୋଷ୍ଟ, କୁକୁଡ଼ା ମାଂସ ସିଝା ଖାଇଲାଣି ତ ଗୋରୁମାଂସ, ଘୁଷୁରିମାଂସ, ଷ୍ଟିକ୍ କା'ର ଅତି ପ୍ରିୟ । ଗୋଟାଏ ପ୍ଲେଟ୍ ଉପରେ ପୁରା ଷ୍ଟିକ୍‌ଟିଏ ଧରି ବସି ପଲେ ପଲେ କାଟି ଖାଉ ଖାଉ ଶେଷ ହେବାକୁ ଢେର ସମୟ ନିଏ । ଏହି ମାଂସ ଖାଉଁ ଖାଉଁ ଆମେ ତରକାରୀ ଖାଇଲା ଭଳି ପାଉଁରୁଟି ଖଣ୍ଡିଏ କାମୁଡ଼ି ନିଅନ୍ତି କି ସିଝା ହୋଇଥିବା ବିନ୍ ଆଦି ପରିବା ପାଟିରେ ପକାନ୍ତି । ଏହି ମାଂସ ଖାଲି ସିଝା ହୋଇଥିବ, ଏଥିରେ ଲୁଣ କି ମସଲା ପଡ଼ି ନ ଥିବ । ଲୁଣ ଓ ମସଲା ଗୁଣ୍ଡ ଛିଞ୍ଚି ଖାଇବା କଥା । ଆମେରିକାନ୍ ପରିବାରରେ ମରିଚ ଗୁଣ୍ଡ ହେଲା ପ୍ରଧାନ ମସଲା । ଅନ୍ୟ ମସଲା, ହଳଦର ବ୍ୟବହାର ନାହିଁ । ଆମେରିକାରେ ଯେଉଁମାନେ ଇଟାଲୀୟ ବା ମଧ୍ୟ ପ୍ରାଚ୍ୟ ବାସୀ ସେମାନେ ହଳଦୀ, ଲଙ୍କାଗୁଣ୍ଡ ଆଦି ମସଲା ଖାଆନ୍ତି । ସେଥିପାଇଁ ସେ ଦେଶରେ ସବୁ ପ୍ରକାର ମସଲା ଗୁଣ୍ଡ ମିଳେ । ଏମିତି କି ପିଆଜ ଗୁଣ୍ଡ, ରସୁଣ ଗୁଣ୍ଡ ବି । ଆମେ ଘରକ୍ଷୀୟ

ଷ୍ଟାଇଲରେ ଭାତ, ଡାଲି ତରକାରୀ ଖାଉଥିବାରୁ ଆମେ ବଜାରରୁ ସବୁ ପ୍ରକାର ମସଲା ଗୁଣ୍ଡ ଆଣୁଥିଲୁଁ । ହଳଦୀ ଗୁଣ୍ଡ, ଲଙ୍କାଗୁଣ୍ଡ, ପୋସ୍ତ ଗୁଣ୍ଡ, ଧଣିଆଗୁଣ୍ଡ, ଡାଲ୍‌ଚିନି ଗୁଣ୍ଡ, ଲବଙ୍ଗଗୁଣ୍ଡଠାରୁ ଆରମ୍ଭ କରି ପିଆଜ ଗୁଣ୍ଡ, ରସୁଣଗୁଣ୍ଡ, ଅଦାଗୁଣ୍ଡ, ପର୍ଯ୍ୟନ୍ତ ସବୁ ଅଛି । ଆମେରିକାରେ ତରକାରୀ ରାନ୍ଧିଲାବେଳେ ଆମର ସବୁ ମସଲା ପକାଯାଇ ଠିକ୍ ଭାରତୀୟ ଭାବରେ ରନ୍ଧାଯାଏ । ମାଂସ ତରକାରୀ ଉପରେ ନାଲି ଝୋଳ ଠିକ୍ ଆମ ଭାରତୀୟ ଢଙ୍ଗରେ ରହିଥାଏ । ଖାଇବାକୁ ଆମ ଦେଶ ତରକାରୀ ଭଳି ସୁଆଦ । କିଛିଏ ବି ଫରକ ନାହିଁ । କିନ୍ତୁ ଆମେରିକାନ୍‌ମାନେ ଏତେ ମସଲା ଖାଇପାରନ୍ତି ନି, କିମ୍ବା ଏତେ ମସଲା ପଡ଼ିଥିବା ତରକାରୀକୁ ସହ୍ୟକରି ପାରନ୍ତି ନି । ସେମାନେ ମାଂସ ହେଉ, ବା ପନିପରିବା ହେଉ ସବୁ ସିଝାଇ ଖାଆନ୍ତି । ଫୁଲକୋବି, ବନ୍ଧାକୋବି, ବିନ୍, ମଟର, କେରଟ୍, ବିଟ୍ ଆଦି ସେମାନଙ୍କର ପ୍ରିୟ ପରିବା ।

ଦ୍ୱିତୀୟ କୋର୍ସ ସରିଲେ ଆରମ୍ଭ ହୁଏ ଫଳ, ଫ୍ରୁଟ୍ ସାଲଡ଼, ଖିରି ଆଦି ମିଠା ଜିନିଷ । ମରି ଦୁଧ ସହିତ ନାନା ପ୍ରକାର କଟା ଫଳ ଓ ଚିନିକୁ ପକାଇ ଏମିତି ଭାବରେ କରିଥାନ୍ତି ଯେ ଭାରି ମଜା ଲାଗେ । ଆମେ ସେଗୁଡ଼ିକୁ ଘରେ ତିଆରି କରି ବେଶ୍ ଖାଉଥିଲୁଁ । ଏହା ହେଲା ସେମାନଙ୍କର ତୃତୀୟ କୋର୍ସ । ସବାଶେଷରେ ଚତୁର୍ଥ କୋର୍ସ ହେଉଛି କଫି । ସେମାନେ ଖାଇଲାବେଳେ ପାଣି ପିଅନ୍ତି ନି । ସେମାନେ ପିଅନ୍ତି ନାନା ପ୍ରକାର ସୋଡ଼ା, ଲିମୋନେଡ଼୍ ବା ଫଳରସ । ସତେ ଯେମିତି ପାଣି ପିଇବା ସେମାନଙ୍କ ଦେଶରେ ନାହିଁ । ଆମଭଳି ଗିଲାସ ଗିଲାସ ପାଣି ପିଇଯିବା ଦେଖିଲେ ସେମାନେ ଆଶ୍ଚର୍ଯ୍ୟ ହୁଅନ୍ତି । ଶୋଷ ଲାଗିଲେ ବି ଲିମୋନେଡ଼୍ ପିଅ, କୋକା କୋଲା, ପେପ୍‌ସି କୋଲା,

ର୍ଫ୍ରେଲ୍ କୋଲ୍ଡ ଆଦ୍ଦ କେତେ ପାନୀୟ ଅଛି, ତାକୁ ପିଅ । ପିଇଲେ ଦେହ ତାଜା ଲଗିବ । ପାଣିଗୁଡ଼ାକ କାହିଁକି ଅପଥ୍ୟ ପିଇବ । ବଡ଼ ଅଦ୍ଭୁତ ଯୁକ୍ତି ସେମାନଙ୍କର ।

ସନ୍ଧ୍ୟାବେଳେ ଡ଼ିନ୍‌ର ଖାଇସାରି ଶୋଇବାକୁ ଯିବା ପୂର୍ବରୁ ରାତିରେ ସପର ଖାଆନ୍ତି । ସପର ମଧ୍ୟ ହାଲୁକା । ଏହା ରାତି ଦଶଟା ଏଗାରଟାରେ ଖିଆଯାଏ । ଏହା ସାଧାରଣତଃ ନାନା ପ୍ରକାର କେକ୍, ବିସ୍କୁଟ, ଡେଜାର୍ଟରେ ସମାପ୍ତ ହୁଏ । ସପରରେ ଆଇସକ୍ରିମ୍ ମଧ୍ୟ ଖିଆଯାଏ । କେତେ ଜାତିର କେକ୍ ଅଛି । ମାର୍କିନ ଗୃହିଣୀମାନେ ନାନା ଜାତିର କେକ୍ ତିଆରି କରନ୍ତି । ସାଧାରଣ କେକ୍, ଧଳା କେକ୍ ଏପଲ-ସସ କେକ୍, ଡେଟ-କେକ୍, ଫ୍ଲଫି ସ୍ପଞ୍ଜ କେକ୍, ଛେନାକେକ୍ ଚକୋଲେଟ୍ କେକ୍, ଏମିତି କେତେ ପ୍ରକାରର କେକ୍ । ସେହି କେକ୍ ଉପରେ କେତେ ପ୍ରକାର ଚିନି ମିଶ୍ରିତ ପଦାର୍ଥ ଦିଆଯାଇଥାଏ କେକ୍‌ର ସ୍ୱାଦ ବଢ଼ାଇବାପାଇଁ । ମୋତେ କେକ୍ ତିଆରିକରି ଶିଖିବାକୁ ଭାରି ଭଲ ଲାଗିଲା । ଆମ ପରିବାରର ଅତି ପରିଚିତ ମିସେସ ଲୁଡରଙ୍କଠାରୁ ମୋର କେକ୍ ଶିକ୍ଷା ଆରମ୍ଭ । ତା ଛଡ଼ା ଆମ ଘରର ମାଲିକାଣୀ ମିସେସ ଗୁଲେଟି ମଧ୍ୟ ମୋତେ କମ୍ ସାହାଯ୍ୟ କରି ନାହାନ୍ତି । ମିସେସ ଲୁଇସ, ମିସେସ ଟାରଲ୍ଟନ୍‌ଙ୍କ ସାହାଯ୍ୟ ଭୁଲିବାର ନୁହେଁ । ମୋତେ ସେମାନେ ଏତେ ପ୍ରକାରର କେକ୍ ତିଆରି ଶିଖାଇ ଦେଲେ ଯେ ସେଗୁଡ଼ିକୁ ମନେ ରଖିବା ମୋ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା । ଆମେରିକାରେ ମୁଁ ବହୁଥର କେକ୍ କରିଛି, ମୋ କେକ୍ ବେଶ୍ ପସନ୍ଦଯୋଗ୍ୟ ହୋଇଛି । "ଉପଯୁକ୍ତ ଶିକ୍ଷାଦାତ୍ରୀଙ୍କର ଉପଯୁକ୍ତ ଛାତ୍ରୀ" ସେମାନେ ମୋ ତିଆରି କେକ୍ ଖାଇ ହସି ହସି ମନ୍ତବ୍ୟ କରନ୍ତି । ଆମେରିକାନ୍ କୁକ୍ ଓ ପାଉଁରୁଟି ତିଆରିରେ ସେମିତି

ମଧ୍ୟ ମୁଁ ଧୂରନ୍ଧର ହୋଇ ପଡ଼ିଲି । ଆମେରିକାନ୍ 'ପାଏ' ତିଆରିରେ ମଧ୍ୟ ମୁଁ ପଛୁଇଲି ନାହିଁ । 'ପାଏ'ରେ ନାନାପ୍ରକାର ଫଳକୁ କାଟି ପକାଇବାକୁ ପଡ଼େ । ମୋର ଏପଲ୍ ପାଏ ଭଲ ହେଉଥିଲା । ଇଟାଲିୟନ୍ ପିଜା କେମିତି ତିଆରି ହୁଏ ନ ଶିଖି ଛାଡ଼ି ନ ଥିଲି । ଆମ ମାଲିକାଣି ଇଟାଲିୟା ଥିବାରୁ ଭଲ ପିଜା ତିଆରି ଶିଖିବାରେ ଅସୁବିଧା ହୋଇ ନ ଥିଲା । ପିଜାରେ କାକୁଡ଼ି କଟା ଟମାଟୋ କଟା ସହିତ ମୁଁ ଲଙ୍କାମରିଚ କଟା ପକାଇ ଖୁବ୍ ସୁସ୍ୱାଦୁ କରୁଥିଲି । ଇଟାଲିୟନମାନେ ସେମିତି ପିଜାକୁ ପସନ୍ଦ କରନ୍ତି । କାରଣ ଇଟାଲିୟନ୍-ମାନେ ଆମ ଭାରତୀୟଙ୍କ ଭଳି ଖୁବ୍ ଲଙ୍କାପ୍ରିୟ । ଅନେକ ସମୟରେ ଆମେରିକାନ୍‌ମାନେ ଡିନରରେ ସ୍ପେଗାଟି । ମାକାରୁନି ଆଣି ଖାଆନ୍ତି । ସେସବୁ ବଜାରରେ ମିଳେ । ଆଣି ରାନ୍ଧିଦେଲେ ହେଲା ।

ସେମାନଙ୍କ ଆମଲେଟ୍ କେତେ ପ୍ରକାରର । ସାଦା ଆମଲେଟ୍, ଚିଜ୍ ଆମଲେଟ୍, ହାମ ଆମଲେଟ୍, ହର୍ବସ ଆମଲେଟ୍, ମେକ୍‌ସିକାନ ଆମଲେଟ୍, ସ୍ପ୍ରିଂ ଆମଲେଟ୍, ଓ୍ୱେଷ୍ଟର୍ଣ୍ଣ ଆମଲେଟ୍, ପଫିରିଜ୍ ଆମଲେଟ୍, ଫ୍ରେଞ୍ଚ ଆମଲେଟ୍ ଆଦି କେତେ ପ୍ରକାରର । ପ୍ରତ୍ୟେକକୁ ଥରେ ଦୁଇଥର ଘରେ କରି ନ ଶିଖିଲେ ନ ହୁଏ । ସବୁ ତ ମନେ ରହିବ ନି । ଗୋଟାଏ ଖାତା କରି ସେ ସବୁ ଟିପି ରଖିଲି । ଅନେକ ଆମେରିକାନ୍ ଆମଲେଟ୍ ନ ଖାଇ ସ୍କ୍ରେମ୍-ବ୍ଲଡ୍ ଅଣ୍ଡା ଖାଆନ୍ତି । ମୋତେ ସ୍କ୍ରେମ୍‌ବଲ୍‌ଡ୍ ଅଣ୍ଡା ଖାଇବାକୁ ଭଲ ଲାଗେ । ଆମେ ଯେତେବେଳେ ଅନ୍ୟ ସହରକୁ ବୁଲିଯାଉଁ ମୁଁ ଆମଲେଟ୍ ନ ଖାଇ ସ୍କ୍ରେମ୍‌ବ୍ଲଡ୍ ଅଣ୍ଡା ଖାଇବାକୁ ଭଲପାଏ । ଘରେ ମଧ୍ୟ ଆମେ ଏହାକୁ କରି ଖାଉଁ ।

ମାର୍କିନ୍ ଗୃହିଣୀ ଶହ ଶହ ପ୍ରକାର ଖାଦ୍ୟ ତିଆରି କରି ଜାଣେ । କିନ୍ତୁ ଅଧିକାଂଶ ସରଳ । ତିଆରିରେ ଜଟିଳତା କେଉଁଠି ନାହିଁ । ଅଧିକାଂଶ ଖାଦ୍ୟ ଅଧା ରନ୍ଧାହୋଇ ବଜାରରେ ବିକ୍ରୀ ହେଉଥାଏ । ଏମିତି କି ଭାତ ବି । ଆମେରିକାନ୍‌ମାନେ ଭାତ ବିଶେଷ ଖାଆନ୍ତି ନି । ତେବେ ଦିନେ ଦିନେ ମନ କରି ଖାଆନ୍ତି । ସେମାନେ ଚାଉଳ କିଣିଲାବେଳେ ମିନାଟ୍ 'ରାଇସ୍'କୁ ପସନ୍ଦ କରନ୍ତି । ଏହି ମିନାଟ୍ ରାଇସ ଆଗରୁ ଆଂଶିକ ରନ୍ଧା ହୋଇଥାଏ । ଏହାକୁ ଗରମ ପାଣିରେ ପକାଇ ଅଳ୍ପ ମାତ୍ର କେତେ ମିନାଟ୍ ରହିଦେଲେ ଭାତ ହୋଇଯାଏ । ଏହି ମିନାଟ୍ ରାଇସ ଆମେରିକାରେ ଖୁବ୍ ପ୍ରିୟ । କିନ୍ତୁ ଆମେ ତ ଭାରତୀୟ, ଆମକୁ ମିନାଟ୍ ରାଇସ ଭଲ ଲାଗେ ନି । ଆମେ ସେମାନଙ୍କର ସରୁ ଅରୁଆ ଚାଉଳ ଖାଉଥିଲୁଁ । ପ୍ରଥମେ ପ୍ରଥମେ ଆମେ ଜାଣିଥିଲୁଁ, ଆମେରିକାରେ ଉସୁନା ଚାଉଳ ମିଳେନି ବୋଲି । କିନ୍ତୁ ଯେଉଁଦିନ ଦେଖିଲୁଁ 'ଅଙ୍କଲ୍‌ବେନ୍ ରାଇସ', ଉସୁନା ଚାଉଳ, ସେଇ ଦିନଠାରୁ ଆମର ଅରୁଆ ଚାଉଳ ଖିଆ ବନ୍ଦ ହୋଇ ଗଲା । ଅଙ୍କଲ୍‌ବେନ୍ ଚାଉଳ ସବୁଠାରୁ ଦାମିକା, ହେଲେ ଉଷୁନା ଥିବାରୁ ଆମ ମନ ଲାଖି । ତେଣୁ ଏହାକୁ ଆମେ ସବୁଦିନେ ଖାଇଲୁଁ । ଯେଉଁଦିନ ପଲଉ, କାନିକା କି ଖେଚୁଡ଼ି କରୁଁ, ସେ ଦିନ ଯାହା ଅରୁଆ ଚାଉଳ ଖିଆଯାଏ । ଉଷୁନା ଚାଉଳ ଭାତ ହେବାକୁ ବେଶି ସମୟ ନିଏ, ହେଲେ ଏହା ଆମ ଦେଶୀ ଚାଉଳ ଭଳି ସୁଆଦୁ ଲାଗେ ।

ଆମେ ଯେତେବେଳେ ଆମେରିକାରେ ରହୁଥାଉଁ ସେମାନଙ୍କ ରାନ୍ଧିବା ରୀତି ଶିଖିବାକୁ ଭଲ ଲାଗୁଥିଲା କାରଣ ଆମେ ବେଳେ-ବେଳେ ବହୁ ଆମେରିକାନ୍ ବନ୍ଧୁଙ୍କୁ ଆମ ଘରକୁ ଖାଇବାପାଇଁ ନିମନ୍ତ୍ରଣ କରୁଥାଉଁ । ସେମାନେ ଯେତେବେଳେ ଆମକୁ

ସେମାନଙ୍କ ଘରକୁ ନିମନ୍ତ୍ରଣ କରୁଥାନ୍ତି, ଆମେ ଆମ ଘରକୁ ନିମନ୍ତ୍ରଣ ନ କରିବୁ ବା କେମିତି ? ତେଣୁ ସେମାନଙ୍କୁ ନିମନ୍ତ୍ରଣ କଲେ ସେମାନଙ୍କ ରୀତିରେ ରନ୍ଧା ସେମାନଙ୍କୁ ଖାଇବାକୁ ଦେବା ଦରକାର । ସେମାନଙ୍କ ରୀତି ସହିତ ଆମ ଭାରତୀୟ ରୀତିରେ ରନ୍ଧା କେତେ ଜାତିର ଖାଦ୍ୟ ମଧ୍ୟ ଖାଇବାକୁ ଦେଉଁ । ହଳଦୀ, ମସଲା ପଡ଼ିଥିବା ତରକାରୀକୁ ସେମାନେ ପସନ୍ଦ କରନ୍ତି ନି । ନାନା ପ୍ରକାର ଭଜା, ବରା, ସିଙ୍ଗା ତରକାରୀକୁ ସେମାନେ ପସନ୍ଦ କରନ୍ତି । ଆମ ଖିରି, ଛେନାବରା, ସିଙ୍ଗଡ଼ା, ସେମାନେ ଭାରି ପସନ୍ଦ କରନ୍ତି । ସେମାନେ ଯେତେବେଳେ ଆମ ଘରକୁ ଆସନ୍ତି, ଏହି ସବୁ ଖାଦ୍ୟପାଇଁ ଭାରି ଆଗ୍ରହ ଦେଖାନ୍ତି । କେତେକ ସ୍ତ୍ରୀ ଲୋକ ମୁଁ ରାନ୍ଧୁଥିବାବେଳେ ଠିଆହୋଇ ସେଗୁଡ଼ିକ ଶିଖନ୍ତି ଓ କାଗଜ କଲମରେ ଲେଖି ନେଇଯାନ୍ତି । ଆମ ଛେନାବରା, ରସାବଳୀ ସେ ଦେଶରେ ଭାରି ଖ୍ୟାତି ଅର୍ଜନ କରିଥିଲା । ଆମେ ମଧ୍ୟ ପ୍ରତିଦିନ ରାତିରେ ଏହି ରସାବଳୀ, ଛେନାବରା ଆଦି କରି ଖାଉଥିଲୁଁ । ସେ ଦେଶରେ ଛେନା ଭାରି ଶସ୍ତା । ଆମ ଦେଶ ଛେନାଭଳି 'ଛେନା ସେ ଦେଶରେ ମଧ୍ୟ ମିଳେ । ତାକୁ କହନ୍ତି କଟେଜ୍ ଚିଜ୍ । ଚିନି ବି ତ ବେଶ୍ ଶସ୍ତା, ଦୁଧ ବି, ଘିଅ ବି । ମୁଁ ସେହି କଟେଜ୍ ଚିଜ୍ ଆଣି ଘିଅରେ ଭାଜି ଚିନି ରସ ଓ ଦୁଧରେ ପକାଇ ରସାବଳୀ ତିଆରି କରେ । ଆମ ପିଲାଏ ବି ଭଲ ପାଆନ୍ତି ଓ ଆମ ଘରକୁ ଯେଉଁମାନେ ବୁଲି ଆସନ୍ତି ଖାଇ ବେଶ୍ ପ୍ରଶଂସା କରନ୍ତି । ଛେନା ସେ ଦେଶରେ ଏତେ ଶସ୍ତା ଯେ ପ୍ରତିଦିନ ଲେଡ଼ିକେନି, ଛେନାବରା, ରସାବଳୀ କରି ଖାଇଲେ ବି ବିଶେଷ ଖରଚ ଲାଗିବନି ।

ଆମେରିକାନ୍ ରୀତିରେ ଖାଇଲେ, ବାସନ କୁସନ ବିଶେଷ ମଇଳା ହୁଏ ନି । ଆମର ମସଲା, ତେଲ ବଘାର ଆଦି

ବାସନ କୁସନକୁ ଏମିତି ତେଲିଆ ଓ ଚିକଟା କରି ଦିଏ ଯେ ସେଗୁଡ଼ିକୁ ସଫା କରିବା କଷ୍ଟକର ହୋଇପଡ଼େ । ତରକାରି ବଘର ସେମାନଙ୍କ ରାନ୍ଧଣାରେ ନ ଥିବାରୁ ସେମାନଙ୍କ ଭଣ୍ଡାଖାଲି ସରଳ ନୁହେଁ, ବାସନ କୁସନ ମଜା ମଧ୍ୟ ଅଧିକ ସହଜ । ସେମାନଙ୍କ ଚୂଲ୍ଲୀ ମଧ୍ୟ ଆମ ଚୂଲ୍ଲୀଭଳି ବେଶି ଅପରିଷ୍କାର ହୁଏ ନା । ଆମର ଯେଉଁ ତେଲ ଫୁଟଣ, ବଘାରିଲାବେଳେ ଫୁଟିପଡ଼େ, ସେମାନଙ୍କ ଚକ୍‌ଚକ୍ ଚୂଲ୍ଲୀକୁ ଭାରି ଅପରିଷ୍କାର କରି ପକାଏ । ତେଣୁ ଚୁଲ୍ଲୀ ପରିଷ୍କାର କରିବା ଆମର ଗୋଟିଏ ଅଧିକା କାମ । ସେମାନଙ୍କର ସେମିତି କିଛି ଦରକାର ନାହିଁ ।

ଆମେରିକାରେ ମନେକର ତୁମେ କା' ଘରକୁ ସାନ୍ଧ୍ୟଭୋଜନ ପାଇଁ ନିମନ୍ତ୍ରଣ ପାଇଗଲ । ସେ ଉପରୋକ୍ତ ଚାରୋଟି କୋର୍ସ ଛଡ଼ା ଆଉ ଗୋଟିଏ ଅଧିକା କୋର୍ସ ଖାଇବାକୁ ଦେବ । ତା ହେଉଛି ଏପିଟାଇଜର କୋର୍ସ । ଏହା ପ୍ରଥମ ସୁପ୍‌କୋର୍ସ ପୂର୍ବରୁ ଖାଇବାକୁ ଦିଆଯାଏ । ଏହି ଏପିଟାଇଜର ବିଭିନ୍ନ ପ୍ରକାରର ଅଛି । ଏହା ସାଧାରଣତଃ ପାଣିଆ, ଖଟାଖଟା ଲାଗେ । ସେଥିରେ ମଧ୍ୟ ସାମାନ୍ୟ ମଦ ମିଶା ଯାଇଥାଏ । ଗୋଟିଏ ଗିଲାସରେ ଟିକିଏ ଟିକିଏ ନେଇ ପିଅନ୍ତି । ଏଥିରେ ବିଲାତି ବାଇଗଣ ରସ, ଲଙ୍କା, ପିଆଜ, ସାମାନ୍ୟ ମସଲା, ଲୁଣ ଆଦି ରହିଥାଏ । କେଉଁଥିରେ କେଉଁଥିରେ ଛେନା, କାଗଜି ରସ, କୁକୁଡ଼ା ସିଝା ପାଣି, ନାନା ପ୍ରକାର ଫଳରସ ଦିଆ ଯାଇଥାଏ । କକ୍‌ଟେଲ ରିଜ୍ ଏପିଟାଇଜରରେ ସାମାନ୍ୟ ବ୍ରାଣ୍ଡି ଦିଆ ଯାଇଥାଏ ।

ଆଗନ୍ତୁକ ଅତିଥିମାନେ ପ୍ରଥମେ ଡିନର୍ ଟେବୁଲ ଉପରକୁ ଯିବା ପୂର୍ବରୁ ଏହି ଏପିଟାଇଜରକୁ ଗୋଟିଏ ପାଖରେ ବୁମିଟ

ସାହାଯ୍ୟରେ ଟୋକ ଟୋକେ କରି ପିଅନ୍ତି । ସେମାନେ କହନ୍ତି, ଏହା କ୍ଷୁଧାକୁ ବଢ଼ାଏ, ଖାଦ୍ୟବହ ନଳୀକୁ ସଫା କରେ ।

ଆମେ ଯେଉଁ ଯେଉଁ ସ୍ଥାନକୁ ନିମନ୍ତ୍ରିତ ହୋଇ ଯାଇଛୁ, ଯଦି କେଉଁଠି ଏପିଟାଇଜରରେ ମଦ ପଡ଼ିଥାଏ, ତେବେ ସେମାନେ ଆମକୁ ସେ ଏପିଟାଇଜର ଦିଅନ୍ତି ନି । ସେମାନେ ଆମପାଇଁ ଅଲଗା ଏପିଟାଇଜର ତିଆରି କରନ୍ତି । କାରଣ ଅନେକେ ଜାଣନ୍ତି, ଭାରତୀୟମାନେ ମଦ ପ୍ରତି ଖୁବ୍ ସାବଧାନ, ସେମାନେ ମଦକୁ ଛୁଅନ୍ତି ନାହିଁ । ଆମେ ମଧ୍ୟ ସେମାନଙ୍କ କକ୍‌ଟେଲ ପାର୍ଟିରେ ଯୋଗ ଦେଇଛୁ, ଆମ ପାଇଁ ମଦ ପରିବର୍ତ୍ତରେ ଆସେ ଫଳରସ । ଅନେକଙ୍କର ଧାରଣା ଆମେରିକାନ୍‌ମାନଙ୍କର କକ୍‌ଟେଲ ପାର୍ଟିରେ ଯୋଗ ଦେଲେ ମଦ ଖାଇବାକୁ ବାଧ୍ୟ । ଏହା ମୋଟେ ନୁହେଁ । ସେମାନଙ୍କ ପାଟିରେ ମଦ ନ ଖାଇଲେ ସେମାନେ ଖରାପ ଭାବନ୍ତିନି, ବରଂ ତୁମର ନୈଷ୍ଠିକତାକୁ ସେମାନେ ପସନ୍ଦ କରନ୍ତି । ତୁମକୁ ସେମାନେ କେବେ ଅଟା କରନ୍ତି ନି କି ବାଧ୍ୟ କରାନ୍ତି ନି । ଭାରତୀୟଙ୍କ ଉଚ୍ଚ ନୈତିକ ଆଦର୍ଶ ପ୍ରତି ସେମାନଙ୍କ ସମ୍ମାନ ଅତି ବେଶୀ ।

* –

## ସପ୍ତମ ଅଧ୍ୟାୟ

# ଆମେରିକାର ହାଟ ଓ ବଜାର

# ସୁପର ମାର୍କେଟ

ଦୈନନ୍ଦିନ ଜୀବନ ନିର୍ବାହ ପାଇଁ ହାଟବଜାର ଏକାନ୍ତ ଆବଶ୍ୟକ, ଏହା ସବୁ ଦେଶରେ ସମସ୍ତେ ସ୍ୱୀକାର କରିଥାନ୍ତି । ନିତ୍ୟଦିନ ଜୀବନରେ ମଣିଷ ଯାହା ଦରକାର କରେ ତାହା ଯଦି ସୁବିଧା ମୁତାବକ ସେ ପାଇପାରେ ନାହିଁ, ତେବେ ତାର ଜୀବନ ଯାପନ କଷ୍ଟକର ହୋଇପଡ଼େ । ଏଥିପାଇଁ ପୃଥିବୀର ସବୁ ଦେଶରେ ହାଟବଜାରର ସୃଷ୍ଟି । ଆମ୍ଭ ଦେଶରେ କିନ୍ତୁ ହାଟବଜାର ଯେମିତି ହୁଏ, ପୃଥିବୀର ସବୁ ଦେଶରେ ସେପରି ନ ହୋଇ ନାନା ସ୍ଥାନରେ ନାନା ଭାବରେ ହୋଇଥାଏ ।

ଆମେରିକାର ହାଟବଜାର ଆମ ଦେଶଠାରୁ ସଂପୂର୍ଣ୍ଣ ଅଲଗା ଧରଣର । ଆମ ଦେଶରେ ହାଟବଜାରରେ ଯେଉଁଭଳି ହୋହା, ଠେଲାପେଲ, ଝଳଆଅସନା, ସେଭଳି ସେ ଦେଶରେ ଦେଖିବାକୁ ମିଳେ ନାହିଁ । ଆମ ଦେଶରେ ଯେଉଁଠି ହାଟବଜାର ହୁଏ ତାହାର ମାଇଲଏ ବାଟପର୍ଯ୍ୟନ୍ତ କୋଳାହଳ ଶ୍ରୁତି ଗୋଚର ହୁଏ କିନ୍ତୁ ସେ ଦେଶରେ ଏ କଥା ବିରଳ ।

ଆମେରିକାରେ ହାଟ ପରିବର୍ତ୍ତରେ ଦେଖିବାକୁ ମିଳେ ସୁପର ମାର୍କେଟ୍ । ଏହା ଖୁବ୍ ବଡ଼ଧରଣର; ନ ଦେଖିଲେ ସହଜରେ ଧାରଣା କରି ହେବନାହିଁ । ଏଥିରେ ଦୈନନ୍ଦିନ ଜୀବନର ସମସ୍ତ ଆବଶ୍ୟକୀୟ ଜିନିଷ ପ୍ରାପ୍ତ ମିଳେ । ଏଭଳି ସୁପରମାର୍କେଟ ଆମଦେଶରେ କେଉଁଠି ନାହିଁ । ଏଠାକାର ସୁପର ମାର୍କେଟରେ ଶହ ଶହ ଲୋକ ଏକ ସଙ୍ଗରେ ଜିନିଷ କିଣୁଥିଲେହେଁ ପାଟିଗୋଳ ହେବାର କେଉଁଠି ଦେଖା-ଯାଏ ନାହିଁ । ଆମ ଦେଶର ହାଟ କିମ୍ବା ବଜାରରେ ପନିପରିବା ଗୋଟିଏ ଦୋକାନରେ ତ ଡାଲି ଚାଉଳ ତେଲ ଲୁଣ ତେଜରାତି ଆଦି ଆଉ ଏକ ଦୋକାନରେ ମିଳେ । ମାଛ ଓ ମାଂସର ଦୋକାନ ଅଲଗା । କିନ୍ତୁ ଏଠାକାର ସୁପରମାର୍କେଟରେ ସେମିତି ନୁହେଁ । ସୁପରମାର୍କେଟ ଭିତରକୁ ପଶିଗଲେ ସମସ୍ତ ଜିନିଷ ସେହି ଗୋଟାଏ ସ୍ଥାନରୁ ମିଳିପାରେ । ଆମଦେଶରେ ହାଟବଜାର କରିବାକୁ ହେଲେ ଯେପରି ଏ ଦୋକାନ, ସେ ଦୋକାନ ବୁଲି କିଣିବାକୁ ହୁଏ; ତଥାପି ଘରର ସମସ୍ତ ଜିନିଷ ଏକାଥରକେ କିଣିହୁଏ ନାହିଁ, କିନ୍ତୁ ଏଠା ସୁପରମାର୍କେଟକୁ ପଶିଗଲେ ଘଣ୍ଟାକ ମଧ୍ୟରେ ଘରର ଦରକାର ହେଉଥିବା ଯାବତୀୟ ଜିନିଷ ଗୋଟିଏ ସ୍ଥାନରୁ ମିଳିଯାଏ । ସୁପରମାର୍କେଟ ଦୁଆରପାଖେ ପହଞ୍ଚିଲାକ୍ଷଣି ଦୁଆର ଆପେ ଆପେ ଖୋଲିଯାଏ । ଭିତରକୁ ଲୋକମାନେ ଚାଲିଗଲା ପରେ ଆପେ ଆପେ ଦୁଆରବନ୍ଦ ହୋଇଯାଏ । ଦୁଆର ଯେମିତି ଆପେ ଆପେ ଖୋଲେ ଓ ଆପେ ଆପେ ବନ୍ଦ ହୋଇଯାଏ ଦେଖିଲେ ବାସ୍ତବିକ୍ ଆଶ୍ଚର୍ଯ୍ୟ ଲାଗିବ । ଆଲୋକ ତଡ଼ିତ୍‌କୋଷ ନାମକ ଏକ ଯନ୍ତ୍ର ଅଲକ୍ଷ୍ୟରେ ଥାଇ ଏ କାମ କରୁଥାଏ । ସୁପରମାର୍କେଟ ବିଭିନ୍ନ ଭାଗରେ ବିଭକ୍ତ ହୋଇଥାଏ ଓ ସେହି ଅନୁସାରେ ଜିନିଷ ଗୁଡ଼ିକ ସଜା ହୋଇଥାଏ । କି ଦିନ, କି ରାତି ସବୁବେଳେ ସୁପରମାର୍କେଟ ଭିତରେ ବିଭିନ୍ନ

ଟ୍ୟୁବର ଫ୍ଲୁରେସେଣ୍ଟ ଲାଇଟ ଜଳ ହୋଇଥିବାରୁ ତା ଭିତର ଦିନଭଳି ଆଲୋକିତ ହୋଇ ରହେ ଓ ଜିନିଷ ପାତ୍ରଗୁଡ଼ିକ ସୁନ୍ଦର ଦିଶେ । ସୁପର ମାର୍କେଟ ଭିତରେ ବିଭିନ୍ନସ୍ଥାନରେ ବଡ଼ ବଡ଼ ଥାକମାନଙ୍କରେ ସଜାହୋଇ ନାନା ଜିନିଷ ଥୁଆ ହୋଇଥାଏ । ଦୁଧ, ଦହି ଛେନା, ଲହୁଣି, କ୍ରିମ୍, କମଳାରସ, ଅଙ୍ଗୁରରସ ଇତ୍ୟାଦି ଗୋଟିଏ ଭାଗରେ, ପଛପରିବା ଫଳମୂଳ ଆଦି ଗୋଟିଏ ଭାଗରେ । ଆଳୁ, ବାଇଗଣ, ବନ୍ଧାକୋବି, ଫୁଲକୋବି ଓଲକୋବି, ବୋଇତାଳକଖାରୁ, ତରଭୁଜ, ଲାଉ, ଉଲି ପିଆଜ, ରସୁଣ, ପିଆଜ ସାଗ, ବିନ୍‌ଛୁଇଁ, ମଟରଛୁଇଁ, କଞ୍ଚା ଲଙ୍କା ଇତ୍ୟାଦି ବହୁ ପ୍ରକାର ପରିବା ଆଦି ଏକ ବିଭାଗରେ ମିଳେ । ଆମ ଦେଶଭଳି ପଚାସଢ଼ା ପୋକା କଣା ବାଛିବାକୁ ପଡ଼େ ନାହିଁ । ଏ ଦେଶର ଲୋକେ ଭାତ ବିଶେଷ ଖାଉ ନଥିଲେହେଁ ଆମ ଦେଶଭଳି ବିଭିନ୍ନ ପ୍ରକାରର ଅରୁଆ ଓ ଉଷୁନା ଚାଉଳ ମିଳେ । ମସୁର ଡାଲି ମଟର ଡାଲି, ଗୋଟା ବୁଟ, ଅଟା, ମଇଦା, ସୁଜି, ସିମାଇ, ଗହମ ସୁଜି, ଚାଉଳ ଅଟା ମଧ୍ୟ ମିଳେ । ବିଭିନ୍ନ ପ୍ରକାର ଆଚାର ମିଳେ । କାକୁଡ଼ି, ଲେମ୍ବୁ, ସପୁରି, ବଡ଼ ବଡ଼ କଞ୍ଚାଲଙ୍କା, ବିଲାତି ବାଇଗଣର ଆଚାର ଏବଂ ଆମ୍ବ ଆଚାର ଏଠାରେ ବହୁତ ଦାମରେ ମିଳେ । ଲଙ୍କା, ପିଆଜ, ରସୁଣ, ଅଦା, ଡାଲଚିନି, ଅଳାଇଚ, ଗୋଲମରିଚ ଆଦି ସବୁ ପ୍ରକାରର ମସଲା ଗୁଣ୍ଡ ଗୋଟିଏ ଗୋଟିଏ ଟିଣରେ ବନ୍ଦ ହୋଇ ମିଳେ । ପାଉଁରୁଟି, ବିସ୍କୁଟ, କେକ, ନାନଖଟାଇ ବିଭିନ୍ନ ଡିଜାଇନ୍‌ରେ ତିଆରି ହୋଇ ଏଡ଼େ ସୁନ୍ଦର ଭାବରେ ବିନ୍ୟସ୍ତ ହୁଏ ଯେ ଦେଖିଲେ ପେଟ ପୂରିଯିବ । ଏହିସବୁ ଜିନିଷଥିବା ଯାଗାରେ କୌଣସି ବିକାଳିବାଲା ନ ଥାନ୍ତି । ପ୍ରତ୍ୟେକ ଜିନିଷରେ ଦାମ ଓ ଓଜନ ଲେଖାହୋଇ ରହିଥାଏ । କିଣାଳିମାନେ ମାର୍କେଟ ଭିତରକୁ

ପଶିଯାଇ ଯାହାର ଯେଉଁ ଜିନିଷ ଯେତେ ପରିମାଣରେ ବା ଯେତେ ଦରରେ ଦରକାର ସେ ତାହା ସବୁ ନିଜେ ବାହାର କରି ଆଣେ । ହଁ, ସୁପର ମାର୍କେଟରେ ଗୋଟିଏ ପ୍ରକାରର ଗାଡ଼ିଥାଏ, ଏହି ସବୁ ଜିନିଷ ପତ୍ର ବୋହି ଆଣିବା ପାଇଁ ଭିତରକୁ ପଶିଗଲା ବେଳେ ଦୁଆର ପାଖରେ ଥିବା ଗାଡ଼ିରୁ ଗୋଟିଏ ସାଙ୍ଗରେ ନେବାକୁ ପଡ଼େ । ସାଙ୍ଗରେ ଯଦି ଛୋଟ ପିଲା ଥାନ୍ତି ତେବେ ସେମାନଙ୍କୁ ଏହି ଗାଡ଼ିରେ ବସାଇ ଦେଇ ନିଜେ ନିଜର ସଉଦା ଗୋଟି ଗୋଟି କରି ବାଛି ଗାଡ଼ିରେ ପକାଯାଏ । ଏଦେଶରେ ଚାକର ରଖିବା ସମ୍ଭବପର ନୁହେଁ । ତେଣୁ ଏହି ଗାଡ଼ିଟିକୁ ଧରି ସମସ୍ତେ ଜିନିଷ କିଣି ଯାଆନ୍ତି । ମୋର ମନେ ପଡ଼େ ଆମ ରିକ୍ସା ଓ ଚାକର ମୂଲିଆଙ୍କ କଥା । ସେ ସବୁ ଏଠି ସ୍ୱପ୍ନ । ଏ ଦେଶର ସାଧାରଣତଃ ସ୍ତ୍ରୀଲୋକମାନେ ପ୍ରାୟ ବଜାରକରି ଯାଆନ୍ତି । ଏ ଦେଶରେ ସାତ ଦିନରେ ଥରେ ବଜାର କରିବାକୁ ପଡ଼େ । ପନିପରିବା ଫଳମୂଳଠୁଁ ଆରମ୍ଭ କରି ମାଛ ମାଂସ ପର୍ଯ୍ୟନ୍ତ ସାତଦିନ କାଳ ଘରେ ରେଫ୍ରିଜେରେଟରରେ ରଖି ବ୍ୟବହାର କଲେ କିଛି ଖରାପ ଲାଗେ ନାହିଁ । ସାତଦିନ ଚଳିବା ଭଳି ସୁପର ମାର୍କେଟରୁ ଜିନିଷ ସଂଗ୍ରହ କରି ସାରିଲେ ସେ ଗୁଡ଼ିକୁ ସେହି ଗାଡ଼ିରେ ରଖି, ଦୁଆର ପାଖରେ ଥିବା ଦୋକାନୀ ପାଖକୁ ଯିବାକୁ ହୁଏ । ସେଠାରେ ସେ ଜିନିଷର ଦାମ ହିସାବ କରେ । ଏ ଦେଶରେ ଦୋକାନଦାର ଦାମ ହିସାବ କରେ ନାହିଁ, ମୁହଁରେ କି କାଗଜ କଲମରେ । ହିସାବ କରିବା ପାଇଁ ଯନ୍ତ୍ର ବସିଛି । ସେହି ଯନ୍ତ୍ର ସାହାଯ୍ୟରେ ଆଖି ପିଛୁଳାରେ ଦୋକାନୀ ପଇସା ହିସାବ କରିପାରେ । ଏଭଳି ଯନ୍ତ୍ର ଆମେରିକାର କି ଛୋଟ କି ବଡ଼ ସବୁ ଦୋକାନରେ ଥାଏ । ଯନ୍ତ୍ର ସାହାଯ୍ୟରେ ହିସାବ ହେଉ ଥିବାରୁ ଭୁଲହେବାର କେଉଁଠି ଦେଖାଯାଏ ନାହିଁ । ତେଣୁ କ୍ରେତା ବା ବିକ୍ରେତା କାହାର କୌଣସି କ୍ଷତି ହେବାର ସମ୍ଭାବନା ନ ଥାଏ ।

ଆମ ଦେଶ ଲୋକଙ୍କର ଧାରଣା ଯେ, ଆମେରିକାରେ ଆମ ଦେଶର ପନିପରିବା, ଗୁଡ଼ଳ ଓ ଖାଇବା ଜିନିଷ ମିଳେ ନାହିଁ । କିନ୍ତୁ ଏହା ପ୍ରକୃତରେ ଠିକ୍ ନୁହେଁ । ଆମ ଦେଶର ବହୁ ପନିପରିବା ଫଳମୂଳ ଏ ଦେଶ ବଜାର ହାଟମାନଙ୍କରେ ମିଳିବା କଥା ଉପରେ କୁହାଯାଇଛି । କେବଳ ଆମ ଦେଶର ଜହ୍ନି, କଲରା, ପୋଟଳ, କାଙ୍କଡ଼, ଛଚିନ୍ଦ୍ରା ଏଠି ମିଳେ ନାହିଁ । ଏ ଦେଶରେ ଯେଉଁ ଶାଗ ମିଳେ ତାହା ଆମ ଦେଶ ଶାଗଠାରୁ ଅଲଗା । ତେବେ ଆମ ଦେଶର ଖଡ଼ା ଓ ବଥୁଆ ଶାଗ ବାଡ଼ି-ମାନଙ୍କରେ ଦେଖିବାକୁ ମିଳେ । କିନ୍ତୁ ଏ ଦେଶର ଲୋକେ ତାହା ଖାଇବା ଶାଗ ବୋଲି ଜାଣନ୍ତି ନାହିଁ । ଆମ ଦେଶଭଳି ଏ ଦେଶରେ କଖାରୁ ବହୁ ପରିମାଣରେ ମିଳେ । କୁକୁଡ଼ା ଅଣ୍ଡା ମଧ୍ୟ ସେହିପରି ଖୁବ୍ ସସ୍ତା ଓ ବଡ଼ ବଡ଼ ।

ଯେଉଁମାନେ—ଗୋରୁମାଂସ, ବା ଘୁଷୁରିମାଂସ ଖାଆନ୍ତି ନାହିଁ ସେମାନଙ୍କ ପାଇଁ କୁକୁଡ଼ା ମାଂସ ହେଲା ପ୍ରଧାନ । ଏତେ ପରିମାଣରେ ମାଂସ ବିକ୍ରି ହେଉଥିଲେ ମଧ୍ୟ ଏଠା ସୁପର ମାର୍କେଟରେ ସେ ସବୁ ମିଶାମିଶି ହେବାର ଭୟ ନ ଥାଏ । ଏ ଦେଶରେ ଖୁବ୍ ବଡ଼ ବଡ଼ ସମୁଦ୍ର ମାଛ ମିଳେ ଏବଂ ଆମ ଦେଶର ଚିଙ୍ଗୁଡ଼ି ମିଳେ । କିନ୍ତୁ ତାହା ଆମ ଦେଶ ମାଛ ଭଳି ସ୍ୱାଦୁ ଲାଗେ ନାହିଁ । ସୁପର ମାର୍କେଟ ଭିତରେ ଏତେ ମାଛ ମାଂସ ରହିଥାଏ ଯେ ମାସ ମାସ ଧରି ସବୁ ଦିନେ ମିଳେ; କିନ୍ତୁ ଟିକିଏ-ହେଲେ ଗନ୍ଧ ହୁଏ ନାହିଁ । ସୁପର ମାର୍କେଟ ଭିତରେ ଥଣ୍ଡା କରୁଥିବା ରେଫ୍ରିଜେରେଟର୍‌ଯନ୍ତ୍ର ଚାଲୁଥାଏ । ମାଛ ମାଂସ କାଚ ବାକ୍ସରେ ପଶି ରହିଥାଏ । କେତେ ଦିନ ଧରି ରହିଲେ ସୁଦ୍ଧା ଦେଖିବାକୁ ତଟକାଭଳି ଦିଶେ ଓ ସେଗୁଡ଼ିକ ପଚି ଯାଏ ନାହିଁ କି

ଖରାପ ଲାଗେ ନାହିଁ । ଆମ ଦେଶ ବଜାର ହାଟରେ ଯେପରି ପରିସ୍ତା ଜିନିଷ ବିହିସ୍ତି ହୁଏ ଓ ସେଗୁଡିକ ବାଛି କିଣିବାକୁ ବହୁତ ସମୟ ଲାଗେ, ଏ ଦେଶରେ ସେମିତି ନାହିଁ । ମାର୍କେଟ ମାନଙ୍କରେ ସମସ୍ତ ଜିନିଷ ବାକ୍ସ କିମ୍ବା ଜରି କାଗଜରେ ବନ୍ଦ ହୋଇ ରଖା ହୋଇଥାଏ । ପରି କିମ୍ବା ଭେଜାଲ ଜିନିଷ କେହି ବିକିବାର ଦେଖାଗଲେ ତାକୁ କଠିନ ଶାସ୍ତି ଦିଆଯାଏ । ସେଥିପାଇଁ ଏଠା ସୁପରମାର୍କେଟ ଆଦିରେ ପରିସ୍ତା ଜିନିଷଟିଏ ଦେଖିବାକୁ ମିଳେ ନାହିଁ ।

ସୁପର ମାର୍କେଟରେ ଯେ କେବଳ ଖାଇବା ଜିନିଷ ମିଳେ ତା ନୁହେଁ, ପୂର୍ବରୁ କୁହାଯାଇଛି ଦୈନନ୍ଦିନ ଜୀବନର ପ୍ରାତ୍ୟହିକ ଆବଶ୍ୟକୀୟ ଜିନିଷ ଏଠାରେ ମିଳେ । ଡେକ୍ଚି, କଡେଇ, ହାଣ୍ଡି, ପିଠାଖଡ଼ିକା, ପ୍ଲେଟ, କପ୍, ଗ୍ଲାସ, ସାବୁନ, ସ୍ନୋ, ପାଉଡର, ତେଲ, ଲୁଗାପଟା, ପେଣ୍ଟ, ଜାମା, ଜୋତା, ମୋଜା, ଘଣ୍ଟା, ରେଡିଓ, ଗ୍ରାମୋଫୋନ; କେମେରାଠାରୁ ଆରମ୍ଭ କରି ଫାଉଣ୍ଟେନ ପେନ, ପେନ୍ସିଲ, ବହି, ଖାତା ପର୍ଯ୍ୟନ୍ତ ସବୁ ଜିନିଷ ମିଳେ । ଆଉ ମଧ୍ୟ ପିଲାମାନଙ୍କର ସାଇକେଲ, ମଟର, କଣ୍ଢେଇ, ଖେଳନା, ଚେୟାର, ଟେବୁଲ, ଖଟ, ବିଛଣା ଇତ୍ୟାଦି ସବୁ ପ୍ରକାର ଜିନିଷ ମିଳେ ।

ଏଠାକାର ସୁପରମାର୍କେଟରେ ଆଉ ଗୋଟିଏ ନୂଆ କଥା ଦେଖାଯାଏ । ଜିନିଷପତ୍ର ହିସାବ କରି ରସିଦ ଦେଲା ବେଳେ କେତେଗୁଡ଼ିଏ ସବୁଜ ରଙ୍ଗର ଟିକେଟ ଦୋକାନୀ ଦିଏ । ଯିଏ ଯେତେ ଟଙ୍କାର ଜିନିଷ ଖରିଦ କରେ ସେହି ଅନୁପାତରେ ସେ ଟିକଟ ପାଏ । ଏହି ଟିକଟକୁ ଆଣି ଘରେ ସାଇତି ରଖିବାକୁ ହୁଏ ।

ପ୍ରତି ସପ୍ତାହରେ ଏହି ଟିକଟ ସାଇତି ରଖିଲେ ତିନି ଚାରି ମାସ ପରେ ସେହି ଟିକେଟକୁ ନେଇ ଆଉ ଏକ ଦୋକାନକୁ ଯିବାକୁ ପଡ଼େ । ସେଠାରେ ସେହି ଟିକେଟ ଗୁଡ଼ିକ ଦେଲେ ଟିକଟର ସଂଖ୍ୟା ଅନୁଯାୟୀ ନାନା ପ୍ରକାର ଜିନିଷ ବିନା ପଇସାରେ ମିଳେ । ସେହି ଦୋକାନଟି କେବଳ ଟିକଟ ନେଇ ବହୁ ପ୍ରକାର ଜିନିଷ ଦିଏ, ଏପରି କି ଟିକେଟ ବଦଳରେ, ପାର୍କର ଫାଉଣ୍ଟେନ ପେନ୍, ଗ୍ରାମୋଫୋନ, ରେଡିଓ, ଚେୟାର, ଟେବୁଲ, ଲ୍ୟାମ୍ପ, ଭଲ ଭଲ କାଚ ସୂତାର ସ୍କ୍ରିନ୍, ରେଫ୍ରିଜେରେଟର, ଟେଲିଭିଜନ, ଲୁଗାପଟା ଆଦି ଯାବତୀୟ ଜିନିଷ ମିଳିପାରେ । ତେଣୁ ଏ ଦେଶର ଲୋକମାନଙ୍କର ଏହି ସବୁଜ ଟିକଟ ସାଇତି ରଖିବାରେ ବଡ଼ ଝୁଙ୍କ । ବାସ୍ତବିକ ସବୁଜ ଟିକଟ ଦେଇ ଜିନିଷ ଆଣୁଥିବା ଦୋକାନ ଦେଖିଲେ ଯେ କେହି ଲୋକ ସେଭଳି ସାଇତି ରଖିବାକୁ ମନ ବଳାଇବ । ସୁପର ମାର୍କେଟ ବ୍ୟତୀତ ଅନ୍ୟ କେତେକ ଦୋକାନରେ ମଧ୍ୟ ଟିକଟ ମିଳୁଥିବାର ଦେଖାଯାଏ, ଏପରି କି ମଟର ପାଇଁ ପେଟ୍ରୋଲ କିଣିଲେ କେତେ ଦୋକାନରେ ମଧ୍ୟ ଟିକଟ ମିଳେ । ଲୋକ-ମାନଙ୍କର ଏହି ସବୁଜ ଟିକଟ ପାଇଁ ଏତେ ଝୁଙ୍କ ଯେ, ସେମାନେ ଅଧିକ ପଇସା ଦେଇ ଜିନିଷ କିଣିବେ ପଛେ ଟିକଟ ମିଳୁଥିବା ଦୋକାନରୁ ହିଁ ଜିନିଷ କିଣିବେ । ଏହି ପ୍ରଥା ଆମେରିକାରେ ପ୍ରାୟ ୭୦।୮୦ ବର୍ଷ ହେଲା ଚଳି ଆସିଲାଣି । ଆମେ ଏହି ଗ୍ରୀନ୍ ଟିକଟ ଦେଇ କେତେ ଜିନିଷ ବିନା ପଇସାରେ ଖରିଦ କରିଥିଲୁ ।

—*—

## ଅଷ୍ଟମ ଅଧ୍ୟାୟ

# ଦୋକାନୀ ନ ଥାଇ ଦୋକାନ

ଦୋକାନୀ ନ ଥାଇ ଦୋକାନ' ଆମେରିକାରେ ଏକ ବିଚିତ୍ର ବ୍ୟବସ୍ଥା । ଆମେ ଆମେରିକାରେ ପହଞ୍ଚିବା ପରେ କୌଣସି ଜିନିଷ ଯଦି ଆମର ଅଧିକ ଦୃଷ୍ଟି ଆକର୍ଷଣ କରିଥିଲା, ତେବେ ସେ ହେଉଛି ଏହି ଦୋକାନୀ ନ ଥାଇ ଦୋକାନ । ଆମେରିକାରେ କୁଲି, ମଜୁରିଆ ଲୋକର ଆବଶ୍ୟକର ଏକାନ୍ତ ଅଭାବ । ଜଣେ ଯଦି ଦୋକାନଟିଏ କଲା, ତେବେ ଦୋକାନର ଯାବତୀୟ କାମ ସେ ନିଜେ କରିବ । ଏମିତିକି ନିଜେ ଏକା ନ ପାରିଲେ ନିଜ ସ୍ତ୍ରୀ, ପୁଅ, ଝିଅଙ୍କୁ ଦୋକାନ କାମରେ ଖଟାଇବ । ଦୋକାନରେ ସାହାଯ୍ୟ କରିବାପାଇଁ ଲୋକଟିଏ ରଖି ପାରିବ ନାହିଁ । କାରଣ ପ୍ରଥମତଃ ଲୋକଟିଏ ପାଇବା କଷ୍ଟକର । ଦ୍ୱିତୀୟରେ ଯଦି ପାଏ, ତେବେ ମଜୁରି ଏତେ ନେଇନେବ ଯେ ଗୁଡ଼ ଲାଭ ପିମ୍ପୁଡ଼ି ଖାଇଲା ପରି ଚଳନ୍ତି ଦୋକାନର ସବୁ ଲାଭତକ ସେହି ଲୋକର ଦରମାରେ ଚାଲିଯିବ । କାରଣ ଯେଉଁ ଲୋକ ରହିବ ସେ ଯେଉଁ କାମକୁ ପଠାଇବେ ମାସକୁ ଦରମା ନେଇଯିବ ଦୁଇହଜାର ଟଙ୍କା । ଦୋକାନଟି ଯଦି ଛୋଟଖାଟିଆ ହୋଇଥାଏ, ସେ ଏମିତି କେତେ ଲାଭ କରିବ ଯେ ନିଜ ଗରଜ ମେଣ୍ଟାଇ ସେ ଲୋକଟିକୁ ଦୁଇହଜାର ଟଙ୍କା ଦରମା ମାସକୁ ମାସ ଦେଇ ପାରିବ ? ଏଥିପାଇଁ ଆମେରିକାରେ ଯେଉଁମାନେ ଛୋଟଖାଟିଆ ଦୋକାନ କରିଥାନ୍ତି ସେମାନେ ନିଜେ ବା ନିଜ ପିଲା

ଜୁଆଙ୍କୁ ଖଟାଇବା ବ୍ୟତୀତ ବାହାର ଲୋକ ରଖିବାକୁ ସାହସ କରନ୍ତି ନାହିଁ । ଅବଶ୍ୟ ବଡ଼ ବଡ଼ ଦୋକାନ ପାଇଁ ଏ ଅସୁବିଧା ନାହିଁ । ସେମାନେ ବହୁତ ଲୋକ ନିଯୁକ୍ତ କରିଥାନ୍ତି । ସେମାନଙ୍କର ବିକ୍ରୟ ହୁଏ ଅଜସ୍ର, ସେମାନେ ବହୁତ ଟଙ୍କା ଦେଇ ଲୋକ ରଖି ପାରନ୍ତି ।

ଏହି ସମସ୍ୟାକୁ ସମାଧାନ କରିବା ପାଇଁ ଆମେରିକାରେ ଏକ ପ୍ରକାର ଯନ୍ତ୍ର ବାହାରିଛି, ଯେଉଁ ଯନ୍ତ୍ର ନାନାପ୍ରକାର ବିକ୍ରୟ କରିପାରିବ । ଗରାଖଙ୍କଠାରୁ ପଇସା ନେଇ ଜିନିଷ ବିକି ପାରିବ । ଅବଶ୍ୟ ଏହି ଯନ୍ତ୍ରଗୁଡ଼ିକ ଗ୍ରେଟଖାଟିଆ ବ୍ୟବସାୟ କରନ୍ତି । କେଉଁଠି ଚା, କଫି, ନାନା ପ୍ରକାର ମିଠାଇ ଏ ଯନ୍ତ୍ର ବିକୁଛି ତ କେଉଁଠି ନାନା ପ୍ରକାର ସିଗାରେଟ୍ ବିକୁଛି । କେଉଁଠି ସୋଡ଼ା ଲିମୋନେଡ଼ ବିକଲାଣିତ କେଉଁଠି ସକାଳ ଜଳଖିଆ, ମଧ୍ୟାହ୍ନ ଭୋଜନ ବିକୁଛି । ଆମେ ଆମେରିକାରେ ଯେଉଁ ଓ୍ୱାଲଥାମ ସହରରେ ରହୁଥିଲୁ, ସେହି ସହରର ଛକ ଯାଗାମାନଙ୍କରେ ଫୁଟ୍‌ପାଥ ଉପରେ ଏହି ଯନ୍ତ୍ର ବସିଛି । କା'ର ଲିମୋନେଡ଼ କି ସୋଡ଼ା ଦରକାର ହେଲା, ସେ ସଙ୍ଗେ ସଙ୍ଗେ ଏହି ଯନ୍ତ୍ର ପାଖକୁ ଗଲା । ମନେକର ଲିମୋନେଡ଼ ଦାମ୍ ଦଶପଇସା, ସେ ଦଶ ପଇସାର ଗୋଟିଏ ମୁଦ୍ରା ଯନ୍ତ୍ରରେ ଥିବା ଏକ ଫାଙ୍କରେ ଗଳାଇ ଦେବ । ତାପରେ ଗୋଟିଏ ବୋତାମ ଟିପି ଦେଲେ ଲିମୋନେଡ଼ ବୋତଲଟିଏ ବାହାରି ଆସିବ । ବୋତଲଟି ନେଖାଲିବ ପିଇବ, ପିଇସାରି ବୋ'ତଲଟିକୁ ସେଠି ରଖିଦେଇ ଆସିବ । ବଡ଼ ମଜାର, ଯଦି ପଇସା ନ ପକାଇ ଜଣେ ଆଉ ଗୋଟାଏ କଣ୍ଟୁ କାଜେ ମୁଦ୍ରା ବା ମୁଦ୍ରା ଆକାରର ଆଉ କଣ୍ଟୁ ଜିନିଷଟାଏ ପକାଏ, ତେବେ କିଛି ବାହାରି ଆସିବ ନାହିଁ । ସେହି ଠିକାମି ମୁଦ୍ରା ବା ଯେଉଁ କାଜେ ଜିନିଷ ପକାଇଥିବ, ସେଇଟି ବାହାରିଆସିବ । ପୁଣି

ଏମିତି ସୁବିଧା ଅଛି ମନେକର, ତୁମେ ଦଶ ପଇସାର ଲିମୋନେଡ୍ କିଣିବ ତୁମ ପାଖରେ ଦଶ ପଇସା ନାହିଁ, ପଚିଶ ପଇସା ମୁଦ୍ରାଟିଏ ଅଛି । ତମେ ସେହି ମୁଦ୍ରାଟିକୁ ପକାଇ ଦେଲେ ଲିମୋନେଡଟିଏ ବାହାରି ଆସିବ; ସେଥିସହ ବାକ ପନ୍ଦର ପଇସା । ଏମିତି ଯନ୍ତ୍ରଟିଏ ବସାଇ ଦେଇ ଆମେରିକାର ବହୁ ବ୍ୟବସାୟୀ ଦୋକାଣୀ କରୁଛନ୍ତି, ଲୋକ ରଖିବା ଦରକାର ନାହିଁ । ବିନା ଦୋକାଣୀରେ ଦୋକାନ ଚାଲୁଛି ।

ସୋଡ଼ା, ଲିମୋନେଡ୍ ଛଡ଼ା ଚା କଫି ଦୋକାନରେ ମଧ୍ୟ ଏମିତି କାରସାଦି । ସେମିତି ଯନ୍ତ୍ର ରାସ୍ତା ଘାଟରେ ବସିଛି ସେଠି ଚା, କଫି ସବୁ କିଛି ମିଳେ । ଦୋକାଣୀ ନାହିଁ । ତୁମେ ଗଲ, ତୁମର ଚା କ କଫି ପିଇବାକୁ ଇଚ୍ଛା, ପଇସା ପକାଇଦେଇ ସ୍ୱିଚ ମୋଡ଼ିଲେ, ପ୍ରଥମେ ଗୋଟିଏ କାଗଜ ଗିଲାସ ବାହାରି ଆସିବ । କାଗଜ ଗିଲାସଟି ବାହାରି ଆସି ଗୋଟିଏ ପାଇପ୍ ମୁହଁରେ ରହିଯିବ । ମନକୁମନ ଚା କ କଫି ବାହାରିଆସି ଗିଲାସଟିକୁ ପୂର୍ଣ୍ଣ କରିଦେବ । ପାଣୀୟ ବେଶ୍ ଗରମ, ଠିକ୍ ଯେମିତି ଚୂଲ୍ଲୀରୁ ଓହ୍ଲାଯାଇଛି, ତୁମେ ନେଇଆସି ପିଇଲ । ଏହି ଚା କ କଫିରେ ଆବଶ୍ୟକ ମୁତାବକ ଦୁଧ, ଚିନି ଆଦି ମିଶିଥିବ । ମନେକର ତୁମର ଖାଲି କଳା ଚା କ କଫି ପିଇବାକୁ ଇଚ୍ଛା, ତେବେ ସେହି ଯନ୍ତ୍ରର ଡାଏଲକୁ ସେମିତି ଭାବରେ ବୁଲାଇ ଦେଇ ପଇସା ପକାଇ ବୋତାମ ଚିପିଲେ ଖାଲି କଳା ଚା କ କଫି ବାହାରି ଆସିବ । ମନେକର ତୁମର ଅଧିକ ଦୁଧ ପଡ଼ିବା ଦରକାର, ତା ବି ହୋଇ-ପାରିବ । ତୁମେ ଯେମିତି ବରାଦ କରିବ, ଯନ୍ତ୍ର ଠିକ୍ ସେମିତି ଚା କ କଫି ଦେଇପାରିବ । ଅଧିକ ପଇସା ପକାଇଲେ ଚା, କଫି ସହିତ ବାକ ପଇସା ବି ଫେରି ଆସିବ । ଆମେରିକାରେ

ସହାୟିକାର ଅଳ୍ପ କେଇଦିନ ଭିତରେ ମୁଁ ଯେଉଁଦିନ ଡାକ୍ତର ମହାପାତ୍ରଙ୍କ ସହିତ ବ୍ରେଣ୍ଡାଇସ ବିଶ୍ୱବିଦ୍ୟାଳୟକୁ ବୁଲିଯାଇଥିଲି, ତାଙ୍କ ଗବେଷଣାଗାରର ପ୍ରଧାନ ଫାଟକ ନିକଟରେ ଏ ଯନ୍ତ୍ରକୁ ଦେଖି ଚମକି ପଡ଼ିଥିଲି । ଗବେଷଣାଗାରର ବହୁ ଯୁବକ ଯୁବତୀ ସେହି ଯନ୍ତ୍ରଠାରୁ ଚା, କଫି ଆଦି ପାନୀୟ ଖରିଦ୍ କରୁଥିଲେ । ମୁଁ ଯନ୍ତ୍ରର ବିଚିତ୍ର କାରବାର ଦେଖି ଚମତ୍କୃତ ହେଉଥିଲି । ସେହି ଯନ୍ତ୍ର ପାଖରେ ଥୁଆ ହୋଇଥାଏ, ଆଉ ଏକ ମିଠାଇ ବିକିବା ଯନ୍ତ୍ର । ଏ ଯନ୍ତ୍ରରେ ନାନାପ୍ରକାର ବିସ୍କୁଟ, ମିଠାଇ ଆଦି ଥୁଆ ହୋଇଥାଏ । ସେଗୁଡ଼ାର ଦାମ ଅଲଗା ଅଲଗା । ଯା'ର ଯେଉଁ ମିଠାଇ କି ବିସ୍କୁଟ୍ କି କେକ୍ ଦରକାର, ସେ ପଇସା ପକାଇ ସେହି ଯନ୍ତ୍ର ତଳେ ଥିବା ଚାବିକୁ ଦାବିଲେ ସେଇ ମିଠାଇ ବାହାରିଆସେ । ପଇସା ନ ପକାଇ ଦାବିଲେ କିଛି ବାହାରି ଆସିବ ନାହିଁ । ସେହି ବ୍ୟବସ୍ଥା ଦେଖି ମୋତେ ଭାରି ଖୁସି ଲାଗିଲା । ବାଃ, ବଢ଼ିଆ ବ୍ୟବସ୍ଥା ତ ! ଯା'ର ଚା, କି କଫି, କି ଜଳଖିଆ ଦରକାର, ଏଠାକୁ ଆସି ପଇସା ପକାଇ ସବୁ କିଣିପାରିବ । ଦୋକାନୀ ବୋଲି କେହି ନାହିଁ, କିନ୍ତୁ ବିଚିତ୍ର କାରବାର ଓ ପଇସା ଦିଆନିଆ ଚାଲିଛି । ବ୍ରେଣ୍ଡାଇସ ବିଶ୍ୱବିଦ୍ୟାଳୟର ଏଭଳି ବ୍ୟବସ୍ଥା ଦେଖି ମୁଁ ସେଦିନ ଏତେ ଖୁସି ହୋଇଯାଇଥିଲି ଯେ ସେକଥା କହି ହେବ ନି ।

ଏହି ଘଟଣାର କିଛିଦିନ ପରେ ଆମେ ଆମେରିକା ରାଜଧାନୀ ୱାସିଙ୍ଗଟନ୍‌ଯାଇଥିଲୁଁ । ୱାସିଙ୍ଗଟନ୍ ବସ୍ ଷ୍ଟେସନରେ ଓହ୍ଲା-ଇଲାବେଳକୁ ପିଲାମାନଙ୍କୁ ଭାରି ଭୋକ ଲାଗୁଥାଏ । ଆମେ ଯେଉଁ ଷ୍ଟେସନରେ ଓହ୍ଲାଇଲୁଁ ସେ ହେଉଛି ଗ୍ରେ-ହାଉଣ୍ଡ ବସ୍ ଷ୍ଟେସନ । ପିଲାମାନଙ୍କୁ ଜଳଖିଆ ଖାଇବାକୁ ଦେବାକୁ ପଡ଼ିବ । ସେହି ଷ୍ଟେସନରେ ଖୁବ୍ ବଡ଼ ବଡ଼ ଯନ୍ତ୍ର ସବୁ ବସିଥାଏ । ଏଥିରେ

ବ୍ରେକ୍‌ଫାଷ୍ଟ, ଲଞ୍ଚ ଆଦି ସବୁ ମିଳୁଥାଏ । ଉକ୍ତର ମହାପାତ୍ର ପିଲମାନଙ୍କୁ ସେ ଯନ୍ତ୍ର ପାଖକୁ ନେଇଯାଇ ତିଆରି ହୋଇ ଥୁଆ-ହୋଇଥିବା ଖାଦ୍ୟ ପଦାର୍ଥ ଦେଖାଇଲେ । କାଗଜ ପ୍ଲେଟ୍‌ରେ ନାନାପ୍ରକାର ଖାଦ୍ୟ ପଦାର୍ଥ ତିଆରି ହୋଇ କାଚ ଆଲମାରିରେ ଥୁଆ ହୋଇଥାଏ । ସେସବୁ ଖାଦ୍ୟତଳେ ଲେଖା ହୋଇଥାଏ ସେ ସବୁ କି କି ଖାଦ୍ୟ । ପିଲମାନେ ଯେଉଁଗୁଡ଼ିକୁ ବାଛିଲେ ପଇସା ପକାଇ ତାରି ତଳେ ଥିବା ଗୁବକୁ ଦାବିଲାରୁ ସେସବୁ ଖାଦ୍ୟପଦାର୍ଥ ବାହାରି ଆସିଲା । ବଡ଼ ବିଚିତ୍ର, ଖାଦ୍ୟ ପଦାର୍ଥଗୁଡ଼ିକ ହାତକୁ ଗରମ ଲାଗୁଥାଏ, ସତେ ଯେମିତି ଏଇ ସଙ୍ଗେ ସଙ୍ଗେ ତିଆରି ହୋଇଛି । ପିଲମାନେ ସେସବୁ ଖାଦ୍ୟକୁ ନେଇଯାଇ ନିକଟରେ ପଡ଼ିଥିବା ଚେୟାର ଟେବୁଲ ଉପରେ ଥୋଇ ଖାଇଲେ । ବଡ଼ ବିଚିତ୍ର ଲାଗୁଥାଏ ମୋତେ । ଏସବୁ କୁହୁକପୁରୀର ଘଟଣା ଭଳି ବୋଧ ହେଉଥାଏ । ଆମର କିଛି ଖାଇବାକୁ ଇଚ୍ଛା ହେଉ ନ ଥିଲା । ଆମେ ନିକଟବର୍ତ୍ତୀ ଆଉ ଏକ ଯନ୍ତ୍ରରୁ ଗରମ ଗରମ କଫି ଆଣି ପିଇଲୁ ।

ସେମିତି ଆଉ ଥରେ ଆମେ ଶିକାଗୋ ଗଲାବେଳେ କ୍ଲିଭ୍‌ଲାଣ୍ଡ ସହର ଗ୍ରେହାଉଣ୍ଡ ବସ୍ ଷ୍ଟେସନରେ ଏମିତି ରାତ୍ରି ଭୋଜନ କରିଥିଲୁ । ନାଏଗ୍ରା ଜଳପ୍ରପାତରୁ ଆମେ ଶିକାଗୋ ଯାଉଥାଉଁ । କ୍ଲିଭଲାଣ୍ଡରେ ପହଞ୍ଚିଲାବେଳକୁ ରାତି ଦଶଟା । କ୍ଲିଭଲାଣ୍ଡସ୍ଥ ଗ୍ରେହାଉଣ୍ଡ ବସ୍ ଷ୍ଟେସନ ଖୁବ୍ ବଡ଼ । କ୍ଲିଭଲାଣ୍ଡଠାରେ ଆମକୁ ବସ୍ ବଦଳାଇବାକୁ ପଡ଼ିଲା । ଆମେ ଯେଉଁ ବସ୍‌ରେ ବଫେଲୋ ସହରରୁ ଆସିଥାଉଁ ସେ ବସ୍ ଆମକୁ କ୍ଲିଭଲାଣ୍ଡରେ ଓହ୍ଲାଇଦେଇ ମିଜୋରି ରାଜ୍ୟସ୍ଥ ସେଣ୍ଟଲୁଇ ସହରକୁ ଆଉ ଏକ ବାଟରେ ଚାଲିଗଲା । ଆମେ କ୍ଲିଭଲାଣ୍ଡରେ ଅପେକ୍ଷା କଲୁଁ ଶିକାଗୋ ବସ୍

ଅଭିମୁଖେ । ସେଠାରେ ବହୁ ପ୍ରକାର ଯନ୍ତ୍ର ବସିଥାଏ, ସକାଳ ଜଳଖିଆ, ମଧ୍ୟାହ୍ନ ଭୋଜନ, ସାନ୍ଧ୍ୟ ଭୋଜନ, ରାତ୍ରି ଭୋଜନ ସବୁ କିଛି ଦେବ ପାଇଁ । କେତେ ରକମର ଖାଦ୍ୟପଦାର୍ଥ ! ଯା'ର ଯା ଇଚ୍ଛା, ସେ କିଣି ଖାଇପାରିବ । ସବୁ କିଛି ଗରମ, ଟଟକା । ଆମଭଳି ବହୁ ଲୋକ ଏହି ଯନ୍ତ୍ରରୁ ଖାଦ୍ୟପଦାର୍ଥ କିଣି ଖାଉଥାନ୍ତି । ଖାଇବାପାଇଁ ନିକଟରେ ସବୁ ଡାଇନିଂ ଟେବୁଲ ପଡ଼ିଛି । ଖାଦ୍ୟ କିଣିଲି, ଏଠା ଉପରେ ବସି ଖାଇଲି । ଖାଇବା ପ୍ଲେଟ୍‌ସବୁ କାଗଜରୁ ତିଆରି । ଖାଇସାରି ଅଇଁଠା ପ୍ଲେଟ୍‌ଗୁଡ଼ିକ ନିକଟସ୍ଥ ଅଳିଆବାକ୍‌ସରେ ପକାଇଦେଲି ।

ଏହି ଦୋକାନୀ ନ ଥାଇ ଦୋକାନ ଯେ ଖାଲି ଖାଇବା ପଦାର୍ଥ ବିକୁଛି ତା ନୁହେଁ ଲୁଗା ମଧ୍ୟ ସଫା କରିଦେଉଛି । ଆମେରିକାରେ ପ୍ରାୟତ ଲୁଗା ସଫା କଳ ମିଳେ, ତଥାପି ବହୁତ ଲୋକ ଅଛନ୍ତି, ଯେଉଁମାନଙ୍କ ଘରେ ଲୁଗା ସଫା କଳ ନାହିଁ । ସେମାନେ ସେମାନଙ୍କ ମଇଳା ଲୁଗାପଟା ସଫା କରନ୍ତି ଲଣ୍ଡ୍ରୋମାଟରେ । ଲଣ୍ଡ୍ରୋମାଟରେ ଧାଡ଼ି ଧାଡ଼ି ଧୋଇ ଲୁଗା ସଫା କଳ ବସିଛି । ତୁମେ ମଇଳା ଲୁଗା ନେଇଗଲ, ସେହି ଯନ୍ତ୍ରରେ ପକାଇ ଦେଲ । ନିକଟବର୍ତ୍ତୀ ଆଉ ଏକ ଯନ୍ତ୍ରରୁ ସାବୁନ ଗୁଣ୍ଡ କିଣି ସେହି ଲୁଗା ସହିତ ପକାଇଦେଲ । ତା'ପରେ ଯନ୍ତ୍ରର ଆଉ ଏକ ସ୍ଥାନରେ ପଇସା ପକାଇ କଳକୁ ମୋଡ଼ି ଦେଲେ ଏହା ଚାଲିଲା । ଆବଶ୍ୟକୀୟ ପଇସା ନ ପକାଇଲେ କଳ ଚାଲିବ ନାହିଁ । କଳ ଚାଲିଲାକ୍ଷଣି ଆଗେ ଗରମ ପାଣି ଆସି ଲୁଗାକୁ ଭିଜାଇ ସାବୁନ ସହିତ ଫେଣିବ । ସେହି ସାବୁନ ମିଶା ଗରମ ପାଣିରେ ଲୁଗା ଏପଟ ସେପଟ ହୋଇ କଚା ହେବ । କିଛି ସମୟ ପରେ ମଇଳା ପାଣିତକ ବାହାରି ଯାଇ ଭଲ ପାଣି ଆସି ଲୁଗାକୁ ଧୋଇବ ।

ଚାପରେ ଚିପୁଡ଼ି ଦେଇ ଦେବ । ଲୁଗା ସଫା ହୋଇ ଚିପୁଡ଼ି ହୋଇଗଲେ ଯନ୍ତ୍ର ମନକୁମନ ବନ୍ଦ ହୋଇଯିବ । ତା'ପରେ ତୁମେ ଲୁଗାକୁ କାଢ଼ିଆଣି ସେମିତି ପଇସା ପକାଇ ଲୁଗା ଶୁଖା ଯନ୍ତ୍ରରେ ପକାଇଲେ, ଲୁଗା ଶୁଖିଯିବ । ସଫା ଲୁଗା ନେଇ ଘରକୁ ଫେରିବ । ଏହି ସବୁ କାମ ଅଧଘଣ୍ଟାଏ ପଇଁତ୍ରିଶ ମିନିଟ୍ ଭିତରେ ହୋଇଯିବ । ଆମେ ଆମେରିକାରେ ଥିଲା ବେଳେ ଘରେ ଆମର ଲୁଗ ସଫା କଳ ନ ଥିଲା । ଆମେ ଏହି ଲଣ୍ଡ୍ରୋମାରେ ଏମିତି ଭାବରେ ଲୁଗା ସଫା କରିଥିଲୁଁ । ଆମେ କ'ଣ କରୁ, ଆମ କାର୍‌ରେ ମଇଳା ଲୁଗ ତକ ଘରୁ ନେଇଯାଉଁ । ଲଣ୍ଡ୍ରୋମାରେ ମଇଳା ଲୁଗା ସେହି ଯନ୍ତ୍ରରେ ପକାଇ ଦେଇ ଯନ୍ତ୍ରକୁ ଚଳାଇ ବଜାରକୁ ଚାଲିଯାଉଁ ବଜାର କରିବା ପାଇଁ । ବଜାର କରି ସାରି ଫେରିଲା ବେଳକୁ ଲୁଗା ସବୁ ସଫା ହୋଇ ଚିପୁଡ଼ା ହୋଇ ଥୁଆ ହୋଇଥାଏ । ଯନ୍ତ୍ରରୁ ବାହାର କରି ଶୁଖାଇବା ଯନ୍ତ୍ରରେ ଶୁଖାଉଁ । ସଫା, ଶୁଖିଲା ଲୁଗା ଧରି ଘରକୁ ଫେରୁ । ଗୋଟିଏ ଥରରେ ବଜାର କରା ଓ ଲୁଗା ସଫା କରା ହୋଇଯାଏ । ଲଣ୍ଡ୍ରୋମାମାନଙ୍କରେ ୨୦।୨୫ କରି ଯନ୍ତ୍ର ବସିଥାଏ । ଯେତେବେଳେ ଯିବ, ନିଶ୍ଚୟ କୌଣସି ନା କୌଣସି ଯନ୍ତ୍ର ଖାଲି ଥିବ । ତୁମକୁ ଅପେକ୍ଷା କରିବାକୁ ପଡ଼ିବ ନାହିଁ । ମନେକର, ତୁମ ପାଖରେ ନୋଟ୍ ଅଛି, ରେଜା ପଇସା ନାହିଁ । ତେବେ କ'ଣ କରିବ ? ସେଠି ଏମିତି ଯନ୍ତ୍ର ବସିଛି, ସେ ଯନ୍ତ୍ର ନୋଟ କୁ ଧାତବ ମୁଦ୍ରାକୁ ଭଙ୍ଗାଇ ଦେଇ ପାରିବ । ନୋଟ ଭଙ୍ଗା ଯନ୍ତ୍ର ବିଚିତ୍ର ଧରଣର । ସେହି ଯନ୍ତ୍ରରେ ନୋଟକୁ ସଳଖ କରି ଭର୍ତ୍ତିଇ ଦେଇ ଯନ୍ତ୍ରକୁ ବନ୍ଦ କରି ବୋତାମ ଟିପିଲେ ନୋଟ ମୂଲ୍ୟବକ ରେଜା ବାହାରି ଆସେ । ତୁମେ ଯଦି ଜାଲ ନୋଟ୍ ରଖିବ, କିଛି ବାହାରିବ ନାହିଁ । ସେଥିରୁ ତୁମେ ଜାଣି ପାରିବ, ତୁମ ନୋଟ୍

ଜାଲ୍ ବୋଲି । ସେ ଦେଶରେ ପିଲଙ୍କ ଖେଳିବା ପାଇଁ ନାନା ପ୍ରକାର ନୋଟ ମିଳେ । ସେହିପରି ନୋଟ୍ ଦେଖିବାକୁ ଅବିକଳ ଚଳୁଥିବା ନୋଟ୍ ଭଳି । ସହଜରେ ବାରି ହେବନି । ଏ ନୋଟକୁ ସେ ଯନ୍ତ୍ର ଭିତରେ ପୂରାଇଲେ, କିଛି ରେଜା ବାହାରିବନାହିଁ । ଏହେଲା ନୋଟ୍ ଭଙ୍ଗା ଯନ୍ତ୍ର । ମୁଦ୍ରା ଭଙ୍ଗା ଯନ୍ତ୍ର ବି ଅଛି । ମନେକର ତୁମ ପାଖରେ ଆଠଣିଟିଏ ଅଛି । ତୁମର ଦୁଇଟି ଦଶପଇସା ଦରକାର । ତୁମେ ଆଠଣିଟିକୁ ଏ ଯନ୍ତ୍ରରେ ପୂରାଇ ଦେଲେ ଦୁଇଟି ଦୁଇଣି ଓ ପାଞ୍ଚଟି ଦଶ ପଇସା ବାହାରି ଆସିବ । ଆଠଣି ପରିବର୍ତ୍ତେ ଆଠଣି ଆକାରର ଆଉ କିଛି ମୁଦ୍ରା ବା ଗୋଲ ପଦାର୍ଥଟିଏ ପକାଅ କିଛି ବାହାରିବ ନାହିଁ ।

ଆମେରିକାରେ ଟେଲିଫୋନ କଲବେଳେ ସେମିତି ବ୍ୟବସ୍ଥା । ମନେକର, ତୁମେ କା' ପାଖକୁ ଟେଲିଫୋନ କରିବ । ରାସ୍ତାରେ ଯନ୍ତ୍ର ବସିଛି । ସେଠାକୁ ଗଲ । ଆବଶ୍ୟକୀୟ ପଇସା ପକାଇ ଦେଇ ନମ୍ବର ଡାଏଲ୍ କଲ, ତୁମେ ଯେଉଁଠାକୁ ଫୋନ କରୁଛ, ସେଥି ସହିତ ସଂଯୁକ୍ତ ହୋଇଗଲ ! ତୁମେ ତା' ସହିତ କଥାବାର୍ତ୍ତା କରି ପାରିବ । ଫୋନ୍ କରିବା ପାଇଁ ଦଶ ପଇସା ଦରକାର । ତା' ସ୍ଥାନରେ ତୁମ ପାଖରେ ଆଠଣିଟିଏ ଅଛି ଆଠଣିଟିକୁ ପକାଇ ଦିଅ । ଫୋନ୍ କରି ସାରିଲା ବେଳକୁ ବାକି ୪୦ ପଇସା ଫେରି ପାଇବ । ମନେକର ତୁମେ ଦୂର ସ୍ଥାନକୁ ଟ୍ରଙ୍କକଲ କରିବ । ଗୋଟିଏ ଫୋନ୍ଠାରେ ଯାଇ ଟ୍ରଙ୍କକଲ୍ ଷ୍ଟେସନକୁ ଡାକିବ । ତାକୁ ପଚାରିବ, ଅମୁକେଇ ଯାଗାକୁ ଫୋନ୍ କରିବ, କେତେ ପଇସା ଲାଗିବ । ତୁମଠାକୁ ମନେକର ଉତ୍ତର ଆସିବ, ତିନିଟଙ୍କା ଚାରିଅଣା । ତୁମେ ତିନିଟଙ୍କା ପକାଇବ ସେଇ ଯନ୍ତ୍ରରେ । ଆଉ ଚାରିଅଣା ପଇସା ପକାଇ ନାହିଁ । ଆଉ ସେଠୁ ଉତ୍ତର ଆସିବ,

ଘୁରଣା ନ ପକାଇଲେ ଫୋନ୍ ହେବନି । ମନେକର ତୁମ ପାଖରେ ଘୁରଣା ନାହିଁ । ଆଉ ଟଙ୍କାଟିଏ ପକାଇଲ, ଉତ୍ତର ଆସିବ, ତୁମେ ଘୁରେଇଟି ଟଙ୍କା ପକାଇଲ । ଫୋନ୍ କର, ବାକି ପଇସା ଫେରି ପାଇବ । ସତକୁ ସତ ସଙ୍ଗେ ସଙ୍ଗେ ବାକିଣା ପଇସା ବାହାରି ଆସିବ । ତୁମକୁ ମଧ୍ୟ ଦୂର ସ୍ଥାନକୁ ଫୋନ ମିଳି ଯିବ ।

ବଡ଼ ବଡ଼ ରେଲ ଷ୍ଟେସନ କି ବସ ଷ୍ଟେସନମାନଙ୍କରେ ଆଉ ଏକ ପ୍ରକାର ଯନ୍ତ୍ର ଲାଗିଛି, ସେ ତୁମ ଜିନିଷ ପାତକୁ ସାଇତି ରଖିବ । ତୁମେ ମନେକର ଜିନିଷପାତ୍ର ରଖିଦେଇ ସହରକୁ ବୁଲିଯିବ । ସେଇ ଯନ୍ତ୍ରରେ ଜିନିଷ ରଖି ଆବଶ୍ୟକୀୟ ପଇସା ପକାଇଲେ ଜିନିଷ ଗୋଟିଏ ଲୁହା ଆଲମାରିରେ ବନ୍ଦ ହୋଇ ଯାଏ । ତୁମଠାକୁ ଚାବି ଫେରିଆସିବ । ତୁମେ ଚାବିଟି ଧରି ବୁଲି ବାହାରିଗଲ । ତୁମ ଜିନିଷ ବେଶ ନିରାପଦରେ ରହିଲା । ଫେରି ଆସିଲ । ଜିନିଷ ପତ୍ର ଧରି ବସରେ କି ଟ୍ରେନ୍‌ରେ ଆଉ କୁଆଡ଼େ ଗଲ । ଆମେ ଯେତେବେଳେ ବଡ଼ବଡ଼ ସହରକୁ ବୁଲିଯାଉଁ, ଯେଉଁଠି ୪।୫ ଘଣ୍ଟା ବୁଲିବା ଦରକାର, ସେଠି ଆମେ ଏମିତି ଜିନିଷପତ୍ର ଷ୍ଟେସନରେ ଛାଡ଼ିପକାଇ ବୁଲି ବାହାରିଯାଉଁ । କେହି ନେଇ ଯିବାର ଭୟ ନ ଥାଏ । ଆମେରିକାର କି ଗ୍ରେଟ କି ବଡ଼ ସବୁ ବସ ଟ୍ରେନ୍ ଓ ଉଡ଼ାଜାହାଜ ଷ୍ଟେସନରେ ଏଭଳି ବ୍ୟବସ୍ଥା ପାଇବ ।



## ନବମ ଅଧ୍ୟାୟ

# ଆମେରିକା ଲୋକଙ୍କ ବାଡ଼ିବଗିଚା

ଆମେରିକାରେ ମୋଫସଲ ଅଞ୍ଚଳରେ ରହୁଥିବା ଲୋକଙ୍କଠାରୁ ସହରାଞ୍ଚଳରେ ରହୁଥିବା ଲୋକଙ୍କ ସଂଖ୍ୟା ଅଧିକ । ସେଥିପାଇଁ ଆମେରିକାରେ ଗ୍ରେଟବଡ଼ ସହର ସଂଖ୍ୟା ବେଶି । ଖୁବ୍ ବଡ଼ ବଡ଼ ସହରକୁ ଛାଡ଼ିଦେଲେ ଗ୍ରେଟ ଓ ମଝି ମଝିକିଆ ସହରରେ ଯେଉଁମାନେ ବସବାସ କରନ୍ତି, ସେମାନେ ସହରର ଜୀବନ ସଙ୍ଗେ ଗ୍ରାମ୍ୟ ଜୀବନ ଉପଭୋଗ କରିବାର ସୁବିଧା ପାଆନ୍ତି । ସେଭଳି ସହରରେ ଯେଉଁମାନେ ବସବାସ କରନ୍ତି ସେମାନଙ୍କର ଘର ଆଗରେ ଓ ଘର ପଛପାଖରେ ବାଡ଼ିବଗିଚା ଦେଖିବାକୁ ପାଇବ । ଅନେକଙ୍କର ଧାରଣା ଥିବ ଯେହେତୁ ଆମେରିକାନମାନେ ସହରର ଜୀବନଯାପନ ପ୍ରତି ଏକାନ୍ତ ଅଗ୍ରହୀ ସେମାନେ ବାଡ଼ିବଗିଚା କରିବାଠାରୁ ଢେର ଦୂରରେ ଥିବେ । କିନ୍ତୁ ପ୍ରକୃତ ଅବସ୍ଥା ତା ନୁହେଁ । ସେମାନଙ୍କର ବିଶେଷତଃ ମାର୍କିନ ଗୃହିଣୀମାନଙ୍କର ବାଡ଼ିବଗିଚା କରିବା ଝୁଙ୍କ ଏତେ ବେଶି ଯେ ନ ଦେଖିଲେ ଧାରଣା କରି ହେବ ନି । ଆମେରିକାରେ ପହଞ୍ଚିବାର ଅଳ୍ପ କେଇଦିନ ଭିତରେ ଆମେ ସେମାନଙ୍କର ବାଡ଼ିବଗିଚା କରିବା ଝୁଙ୍କ ଦେଖି ଆଶ୍ଚର୍ଯ୍ୟ ନ ହୋଇ ରହି ପାରିଲୁ ନି ।

ଆମେରିକାନମାନେ ସେମାନଙ୍କ ଘର ଆଗରେ ଯେଉଁ ବାଡ଼ି କରନ୍ତି ସେ ବାଡ଼ିରେ ସାଧାରଣତଃ ନାନାପ୍ରକାର ଫୁଲ ଲଗାନ୍ତି ।

ସେମାନଙ୍କ ବାଡ଼ବଗିଚ୍ଚରେ ବାଡ଼ ନ ଥାଏ । ଆମେ ଆମେରିକାରେ ପହଞ୍ଚି ସେମାନଙ୍କ ବାଡରେ ବାଡ଼ ନ ଥିବା ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲୁ । ସାମନା ପାଖରେ ଗୋଲାପ, ଡାଲିଆ, କ୍ରାଇ-ସେନ୍ଥିମାସ୍ ଜିନିଆ ଆଦି କେତେ ପ୍ରକାର ଫୁଲଗଛ ଲଗିଛି, ସାମନା ପାଖର ଲେନ୍ଟି ସମ୍ପୂର୍ଣ ସବୁଜ ଘାସରେ ଭରା ହୋଇ ଭଲ ହୋଇଛି ଅଥଚ ବାଡ଼ଟିଏ କେଉଁଠି ନାହିଁ । ଗୋଟାସାରା ବଗିଚ୍ଚ ସେମିତି ମେଲା । ଆମକୁ ବଡ଼ ଅଦ୍ଭୁତ ଲାଗିଲା । ଖାଲି ଆମକୁ କାହିଁକି ଆମ ଦେଶରୁ ଯେ ଯିବ ତାକୁ ବି ଆଶ୍ଚର୍ଯ୍ୟ ଲାଗିବ । ତେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ । ସେମାନଙ୍କ ଦେଶରେ ବାଡ଼ ଘରପାଖରେ ବାଡ଼ ଘେରାଇବାର ଆବଶ୍ୟକତା ନାହିଁ । ଆମଦେଶରେ ବାଡ଼ ଘରପାଖରେ ଆମେ କାହିଁକି ବାଡ଼ ଘେରାଉ ? ଆମ ଦେଶରେ ରାସ୍ତାଘାଟରେ ଯେଉଁ ଛେଳି, ମେଣ୍ଢା, ଗୋରୁଗାଈ ବୁଲୁଥାନ୍ତି, ସେମାନଙ୍କ ହାତରୁ ରକ୍ଷା କରିବା ପାଇଁ ତ ଆମର ବାଡ଼ ଘେରା । ବାଡ଼ ନ ଘେରିଲେ ସେମାନେ ଆସି ଗଛପତ୍ର ଖାଇ ବଗିଚ୍ଚକୁ ନଷ୍ଟ କରିଦେବେ । ସେମାନଙ୍କ ଦେଶରେ ସେ ସମସ୍ୟା ତ ନାହିଁ । ସେମାନଙ୍କ ଦେଶରେ କେହି ଘରେ ଗୋରୁ ଗାଈ ଛେଳି, ମେଣ୍ଢା, ପାଳନ୍ତିନି । ସେ ସବୁ ଫାର୍ମମାନଙ୍କରେ ପାଳନ କରାଯାଏ । ଆମେରିକାରେ ରାସ୍ତା ଘାଟରେ ଗାଈଟାଏ କି ବଳଦଟାଏ କି ମେଣ୍ଢାଟାଏ ବୁଲିବାର କେହି ଦେଖିବନାହିଁ । ଯଦି ଗୋରୁଗାଈମାନେ ବୁଲୁ ନାହାନ୍ତି ତେବେ ବଗିଚ୍ଚରେ ବାଡ଼ ଦେବା ଦରକାର କଅଣ ? ଏ ଭଳି ବ୍ୟବସ୍ଥା ଖାଲି ଆମେରିକାରେ କାହିଁକି ଇଉରୋପରେ ମଧ୍ୟ ସେଇଆ ଦେଖିବାକୁ ପାଇବ । ଆମେ ଆମେରିକା ଯିବା ବାଟରେ ଲଣ୍ଡନରେ ଦିନଟାଏ ରହିଥିଲୁ । ଆମେ ଯେଉଁ ହୋଟେଲ

ଏରିପ୍ଲେନ୍‌ରେ ଥିଲୁ ସେହି ହୋଟେଲଟି ଲଣ୍ଡନ ସହରର ବାହାରେ, ଲଣ୍ଡନ ଉଡ଼ାଜାହାଜ ଘାଟିକୁ ଲାଗି । ଆମେ ଦିନେ ସକାଳୁ ଉଠି ସେହି ହୋଟେଲ ପାଖଆଖ ଯାଗା ବୁଲିବାକୁ ଯାଇଥିଲୁ । ହୋଟେଲଠାରୁ କିଛି ଦୂରରେ ରାସ୍ତା ଦୁଇପାଖରେ ବିଲ ସବୁ ପଡ଼ିଛି । ସେ ବିଲ ଧାନ କି ଗହମ ବିଲ ନୁହେଁ ଫୁଲକୋବି ବିଲ । ରାସ୍ତା ଦୁଇପାଖରେ ଖାଲି ଫୁଲକୋବି, ରାସ୍ତାକୁ ଲାଗି ଫୁଲ କୋବି ଗଛଗୁଡ଼ିକ ଲଗା ହୋଇଥାଏ । ବାଡ଼ର ଦେଖାନାହିଁ । ଆମକୁ ସେଦିନ ସେ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ଲାଗିଥିଲା । ବାଡ଼ ଘେରାର ଦେଖାନାହିଁ ଅଥଚ ହଜାର ହଜାର କୋବି ବିଲରେ ପଡ଼ି ରହିଛି । ସେ ଦେଶରେ ମଧ୍ୟ ସେମିତି ଗାଈ, ମେଣ୍ଢା ରାସ୍ତାଘାଟରେ ବୁଲୁ-ନାହାନ୍ତି । ସେ ଗୁଡ଼ାକ ଖାଇଯିବ ବା କିଏ ? ତେଣୁ ଅଯଥା ବାଡ଼ କରିବେ କାହିଁକି ? ତା ଛଡ଼ା ଆମ ଦେଶଭଳି ଲୁଚିଯିବା କି କଖାରୁ ଚୋରି ତ ନାହାନ୍ତି, ଅଫିମା କି ଠାଉରିଆ ତ କେଉଁଠି ବୁଲୁନାହାନ୍ତି, ତେଣୁ ସେଗୁଡ଼ିକ ଚୋରି କରିନେବା ପ୍ରଶ୍ନ ତ ଉଠୁନି । ତେଣୁ ବାଡ଼ ଘେରାଇବା କ'ଣ ଦରକାର ?

ଆମେରିକାରେ ବାଡ଼ ଘେରନ୍ତି ନା ସତ, ନିଜ ଯାଗାକୁ ଚିହ୍ନଟ କରିବାପାଇଁ ଏକ ପ୍ରକାର ସୌଖିନ ଗଛର ବାଡ଼ ଦେଇଥାନ୍ତି । ଏହି ବାଡ଼ ବଗିଚାର ସୌନ୍ଦର୍ଯ୍ୟ କେବଳ ହିଁ ବଢ଼ାଏ । ସେମାନଙ୍କର ଏହି ଘର ସାମନା ବଗିଚାରେ ନାନା ଜାତିର ଫୁଲ ଲଗାଇବାର ସଉକ୍ ବେଶୀ । ଘରପାଖରେ ଫୁଲଗଛ ଲଗାଇଥିବେ, ବଗିଚା ମଝିରେ ଘାସ ଲନ୍ ସବୁଜ ଗାଲିଚା ପରି ଶୋଭା ପାଉଥିବ । ଏହି ଲନ୍‌ରେ ଘଡ଼ିଏ ବସିଗଲେ ମନ ଆନନ୍ଦରେ ପୂରିଉଠିବ । ଫୁଲ ଭିତରେ ଅମେରିକାନ୍‌ମାନେ ଗୋଲାପ ଫୁଲକୁ ବହୁତ ପସନ୍ଦ କରନ୍ତି । ଆମେରିକାରେ କେତେ ପ୍ରକାର ଗୋଲାପ ଦେଖିବାକୁ

ଯାଇବ । ବସନ୍ତ ଓ ଗ୍ରୀଷ୍ମ ଋତୁରେ ସେମାନଙ୍କର ଫୁଲ ଫୁଟେ । ବର୍ଷର ଛ ମାସ ତ ଶୀତ, ବରଫ ପଡ଼େ, ତେଣୁ ସେ ଛ ମାସ ଗୋଲାପ ଗଛଗୁଡ଼ାକ ଲଣ୍ଡା ହୋଇଯାଇଥାଏ । ଗୋଟାଏ ସୁଦ୍ଧା ପତ୍ର ନ ଥାଏ । ବରଫ ତରଳିଲେ, ବସନ୍ତ ଆସିଲେ ସେଗୁଡ଼ାକ ଗଜୁରି ଉଠେ । ଏସବୁ ଛଡ଼ା ନାନା ପ୍ରକାର ବିଦେଶୀ ଫୁଲ ବିଭିନ୍ନ ଭଙ୍ଗରେ ବଗିଚାର ଶୋଭା ମଣ୍ଡନ କରୁଥାଏ । ସେମାନଙ୍କ ଫୁଲଗଛ ଆଉ ଲଗା ଏସବୁ ଗ୍ରୀଷ୍ମଦିନେ । ଆମ ବଗିଚାମାନଙ୍କରେ ଯେଉଁ ବିଦେଶୀ ଫୁଲଗୁଡ଼ିକ ଶୀତଦିନେ ଫୁଟେ, ସେମାନଙ୍କର ସେହି ଫୁଲ ଗୁଡ଼ିକ ଗ୍ରୀଷ୍ମଦିନେ ଫୁଟେ । ବରଫ ଛାଡ଼ିଲାବେଳକୁ ନାନା ପ୍ରକାର ଫୁଲ ମଞ୍ଜି ଦୋକାନମାନଙ୍କରେ ବିକ୍ରୟ ହେଉଥାଏ । ସେମାନେ ସେଗୁଡ଼ାକୁ ଆଣି ବୁଣି ପକାଇ ଗଛ କରନ୍ତି । ଏସବୁ ଫୁଲ ବଗିଚା କରିବାରେ ସେ ଦେଶର ସ୍ତ୍ରୀ ଲୋକମାନଙ୍କର ଝୁଙ୍କ୍ ବେଶି । କି କି ଫୁଲ ଗଛ ବଗିଚାରେ ଲାଗିବ, କେଉଁ ଗଛ କେଉଁଠି ଲାଗିବ, ସେ ସବୁ ଠିକ୍ କରେ ମାର୍କିନ ଗୃହିଣୀ । ଗରମ ଦିନେ ତ ଦିନଗୁଡ଼ାକ ବଡ଼ । ରାତି ହେଉ ହେଉ ଦଶଟା । ତେଣୁ ସାନ୍ଧ୍ୟ ଭୋଜନ ଖିଆସାରି ସ୍ୱାମୀ ସ୍ତ୍ରୀ ବଗିଚାରେ ଲାଗିଯାନ୍ତି ଅନ୍ଧାର ଆସିଲା ପର୍ଯ୍ୟନ୍ତ । ନିଜେ ମାଟି ହାଣିବା, ଗଛ ଲଗାଇବା ପର୍ଯ୍ୟନ୍ତ ସବୁ କାମ ନିଜ ନିଜେ କରନ୍ତି । ଆମଭଳି ସେମାନଙ୍କୁ ବିଶେଷ ଦୈହିକ ପରିଶ୍ରମ କରିବାକୁ ପଡ଼େନା । ମାଟି ହାଣିବାପାଇଁ ନାନାପ୍ରକାର ଯନ୍ତ୍ରପାତି ଅଛି । କେତେକ ବଗିଚାରେ ବିଦ୍ୟୁତ୍ ଚାଳିତ ଛୋଟ ଛୋଟ ଟ୍ରାକ୍ଟର ଅଛି । ସେହି ଟ୍ରାକ୍ଟରରେ ବସି ଆଖି ପିଛୁଳାକେ ଜମି ଚଷି ପକାଇବେ । ଘାସ କାଟିବାପାଇଁ ସେମିତି ଯନ୍ତ୍ର ଅଛି । ଆଖି ପିଛୁଳାକେ ଲନ୍‌ର ଘାସକୁ କାଟି ସମାନ କରିଦେବ । ବାଡ଼ରେ ଲଗା ହୋଇଥିବା ଗଛକୁ କାଟି ସମାନ କରିବାପାଇଁ ଏକ ପ୍ରକାର ବିଦ୍ୟୁତ୍ ଚାଳିତ କଇଞ୍ଚି ଅଛି । ଏହାକୁ ଦେଖାଇଲା କ୍ଷଣି ଏହା

ସେସବୁ ଗଛକୁ କାଟି ସେଗୁଡ଼ାକୁ ସମାନ କରିଦେବ, ଫଳରେ ସେଗୁଡ଼ାକ ସୁନ୍ଦର ଦିଶିବ । ଗଛଗୁଡ଼ାକ ଶୀଘ୍ର ବଢ଼ିବାପାଇଁ ନାନା ପ୍ରକାର ସାର ଓ ମସଲା ମିଳେ । ବାଡ଼ରେ ଅଗଛ ମାରିବାପାଇଁ ନାନା ପ୍ରକାର ଔଷଧ ମିଳେ । ସେଗୁଡ଼ିକୁ ଜମିରେ ଦେଲେ କେବଳ ଅଗଛ ହିଁ ମରିବ, ଭଲ ଗଛ ମରିବ ନା । ତୁମ ଯଦି ଜଣେ ଆମେରିକାନ୍‌ର ବଗିଚାକୁ ଯିବ, ତେବେ ଦେଖିବ ପରିବାରର ସମସ୍ତେ ବଗିଚା କାମରେ ଲାଗିଥିବେ । ନିଜ ନିଜ ବଗିଚାକୁ ଖୁବ୍ ସୁନ୍ଦର କରିବାର ଆକାଙ୍କ୍ଷା ସେମାନଙ୍କଠାରେ ଖୁବ୍ ବେଶି । ବାପ, ମା, ପୁଅ, ଝିଅ ସମସ୍ତେ ବଗିଚାରେ କାମ କରିବାକୁ ସୁଖ ପାଆନ୍ତି । ସେମାନଙ୍କ ବଗିଚାରେ ତ ପାଣି ପାଇପ୍, ପାଇପ ଖୋଲି ରବର ନଳ ସାହାଯ୍ୟରେ ପାଣି ଦେଲେ ଢେର ବେଶି ପରିଶ୍ରମର ଲୋଡ଼ା ନାହିଁ ।

ସାଧାରଣ ଫୁଲ ବଗିଚା ଠାରୁ ପନିପରିବା ବଗିଚା ପ୍ରତି ଝୁଙ୍କ ଆହୁରି ବେଶି । ବଗିଚାରେ ଢେର ପ୍ରକାର ପନିପରିବା ସୃଷ୍ଟି କରିବାକୁ ସେମାନଙ୍କ ଇଚ୍ଛା କିନ୍ତୁ ଖାଣ୍ଟି ଖିଆଲ । କଖାରୁ, କାକୁଡ଼ି, ବିଲାତିବାଇଗଣ, ଫୁଲକୋବି, ବନ୍ଧାକୋବିଠାରୁ ଆରମ୍ଭ କରି ସ୍ପିନାକ୍, କେଲ୍ଟ୍ୟମ୍ ମଟରଛୁଇଁ ପର୍ଯ୍ୟନ୍ତ କେତେପ୍ରକାର ପନିପରିବା । ସେମାନଙ୍କ ବଗିଚା ଦେଖିଲେ ଆନନ୍ଦରେ ପେଟ ପୂରିଯିବ । ସେମାନେ କଖାରୁ ଖାଇବାକୁ ଭଲ ପାଆନ୍ତି ନା, କିନ୍ତୁ ବଗିଚାରେ କଖାରୁ ଫଳାଇବାକୁ ଭାରି ଭଲ ପାଆନ୍ତି । ଆମେରିକାରେ ଆମେ ଯେଉଁ ଭଦ୍ର ମହିଳାଙ୍କ ଭଡ଼ାଘରେ ରହୁଥିଲୁ, ତାଙ୍କ ସ୍ୱାମୀ ବଗିଚାରେ ଢେର କଖାରୁ ଫଳାନ୍ତି । କିନ୍ତୁ ତାଙ୍କ ପରିବାରରେ କେହି କଖାରୁ ଖାଆନ୍ତି ନା । ତେଣୁ ସେ କଖାରୁତକ ଆମ ଘରକୁ ଆସେ । ଆମେ କଖାରୁ ଖାଇବାକୁ ଭଲ ପାଉଁ

ବୋଲି ସେମାନେ ଆମକୁ କଖାରୁ ବେଇ ଆନନ୍ଦ ପାଆନ୍ତି । ଖାଲି ସେତିକ ନୁହେଁ, ଆମେ କଖାରୁ ଫୁଲ ଖାଇବାକୁ ଭଲ ପାଉଁ ବୋଲି ଶୁଣିଲ ଦିନଠୁ ଆମ ଗୃହକର୍ତ୍ତ୍ରୀ ମିସେସ ଗୁଲେଟି ଓ ତାଙ୍କ ବୃଦ୍ଧ ସ୍ୱାମୀ ପ୍ରତିଦିନ ସକାଳୁ ଆମ ଦୁଆରେ କଖାରୁ ଫୁଲ ନେଇ ହାଜର । ଏହି କଖାରୁ ଫୁଲକୁ ଲୋକେ ଖାଆନ୍ତି, ଏ ଧାରଣା ସେମାନଙ୍କର ନାହିଁ । ମୁଁ ଯେଉଁଦିନ କଖାରୁ ଫୁଲକୁ ବେସନ ଦେଇ ଭଜିଲି ଓ କଖାରୁ ଡଙ୍କ, ଆଳୁ, ବାଇଗଣ ଚଡ଼ଚଡ଼ି କଲି, ସେଦିନ ଆମ ଘରେ ସମସ୍ତେ ତାଟଙ୍ଗା । ଆମେ ପ୍ରକୃତରେ ଆମେରିକାରେ ଅଛୁଁ କି ଭାରତରେ ଅଛୁଁ, ଧାରଣା କରିବା କଷ୍ଟକର ହେଲା । ଆମ ଘର ମାଲିକାଣୀଙ୍କୁ ମୁଁ ଯେଉଁଦିନ ଗୋଟିଏ କଖାରୁଫୁଲ ଭଜା ଖାଇବାକୁ ଦେଲି, ସେ ତ ଖାଲି ଆଶ୍ଚର୍ଯ୍ୟ ହେଲେ ନା, ଭାରତୀୟ ରନ୍ଧାକୁ ଅଶେଷ ଧନ୍ୟବାଦ ନ ଦେଇ ରହିପାରିଲେ ନା । ସେହିଦିନଠାରୁ ତାଙ୍କ ବଗିଚାରୁ କଞ୍ଚା ଲଙ୍କାମରିଚଠାରୁ ଷ୍ଟିନାକ୍ ଲେଟସ ପର୍ଯ୍ୟନ୍ତ ସବୁ କିଛି ଆମ ଘରକୁ ଆସିଲା । ବିଦେଶରେ ଥାଇ ବଗିଚା କରିବାର ସୌଭାଗ୍ୟରୁ ବଞ୍ଚିତ ହୋଇଥିଲେହେଁ ବଗିଚାର ପନିପରିବା ଉପଭୋଗରୁ ବଞ୍ଚିତ ହୋଇ ନ ଥିଲୁଁ ।

ଆମେରିକାରେ ଆମ ଦେଶର ପ୍ରାପ୍ୟ ସବୁ ପ୍ରକାର ପନି-ପରିବା ମିଳେ, ପୋଟଳ, କଲରା, ଲାଉ, ପାଣିକଖାରୁ ମିଳେନା । ତାଛଡ଼ା ଆଉ ସବୁ ପ୍ରକାର ପନିପରିବା ମିଳେ । ଆମ ଦେଶର ଶାଗ ଭିତରୁ ପାଳଙ୍ଗ, ବଥୁଆ ଶାଗ ଦେଖାଯାଏ । ଆମ ଦେଶ ପୋଇ ମିଳେ ନା ସତ, କିନ୍ତୁ ସେ ଦେଶର ଷ୍ଟିନାକ୍ ଆମ ଦେଶ ପୋଇ କାମ କରେ । ସୁଆଦ ଅନେକ ପରିମାଣରେ ପୋଇ ଭଳି । ଆମେରିକାରେ ବେଳେ ବେଳେ ଆମ ଦେଶର ଶ୍ରେଷ୍ଠ ଶ୍ରେଷ୍ଠ ମାଳ

ଟମାଟୋ ମିଳେ । ମୁଁ ଥରେ ମାଳ ଟମାଟୋକୁ ଫ୍ରିଜ କ. ଆଳୁ ବାଇଗଣ ସହିତ ସୋରିଷ ବଟା ଦେଇ ତରକାରି କରିଥିଲି । ଆମ ଦେଶର ମାଳ ଟମାଟୋ ଓ ପୋଇ ତରକାରିଠାରୁ କୌଣସି ଗୁଣରେ ହୀନ ନୁହେଁ । ଆମେରିକାରେ ବନ୍ଧାକୋବି ଫୁଲକୋବିର ସବୁଦିନେ ପ୍ରାୟ ଗୋଟିଏ ପ୍ରକାର ଦାମ୍ । ସେମାନଙ୍କ ଦେଶରେ ବାଇଗଣିଆ ରଙ୍ଗର ଏକ ପ୍ରକାର ବନ୍ଧାକୋବି ମିଳେ, ବେଶ୍ ସୁଆଦ ।

ଆମେରିକାର ଲୋକେ ଘରେ ଯେଉଁ ବାଡ଼ିବଗିଚା କରନ୍ତି ସେ କଥା ଛାଡ଼ । ସେମାନଙ୍କ ମୋଫସଲରେ ଲୋକେ ଯେଉଁ ବାଡ଼ି ବଗିଚା କରନ୍ତି ସେଗୁଡ଼ାକ ବେଶ୍ ବଡ଼ । ଆମେ ସେମିତି ବହୁତ ପନିପରିବା ବଗିଚା ଦେଖିଛୁ । ସେହି ସବୁ ବଗିଚାରେ ତଟକା ପନିପରିବା ମଧ୍ୟ ବିକ୍ରୟ ହୁଏ । ଆମେ କେତେଥର ସେହି ତଟକା ପନିପରିବା କିଣିବା ପାଇଁ ଆମ ସହର ନିକଟବର୍ତ୍ତୀ ମୋଫସଲ ଅଞ୍ଚଳରେଥିବା ବଗିଚାମାନଙ୍କୁ ଯାଇଛୁ । ସେମାନଙ୍କ ମୋଫସଲ ଅଞ୍ଚଳ ବାଡ଼ିବଗିଚା, ଶସ୍ୟକ୍ଷେତ ମୟ । ଶ୍ୟାମଳ ଜମି ସବୁ ଦେଖିଲେ ପେଟ ଆନନ୍ଦରେ ପୂରିଯାଏ । ବାଡ଼ିବଗିଚା ପ୍ରତି ସେମାନଙ୍କର ସଉକ ଦେଖିଲେ ଆମକୁ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଆମ ଦେଶ ଗରିବ ଦେଶ, ବାଡ଼ିବଗିଚା କଲେ କିଛି ଆର୍ଥିକ ଲାଭ ହୁଅନ୍ତା । ତଥାପି ଆମେ ବାଡ଼ିବଗିଚା ପାଇଁ ପରାଙ୍ମୁଖ , କିନ୍ତୁ ସେ ଦେଶ ଧନୀ, ବାଡ଼ି ବଗିଚା କରିବା ଦରକାର ନାହିଁ ତଥାପି ବି ଲୋକେ ଖୁସିରେ ବାଡ଼ି ବଗିଚା କରନ୍ତି ।

ପନିପରିବା ବ୍ୟତୀତ ନାନାପ୍ରକାର ଫୁଲ ଫୁଲଗଛ ବି ସେମାନଙ୍କ ବଗିଚାରେ ଦେଖାଯାଏ । ପ୍ରତ୍ୟେକଙ୍କ ବାଡ଼ିରେ ଅନ୍ତତଃ

ପକ୍ଷେ ମେଜ କ ନାସପାତି ଗଛଟିଏ ପାଇବ । ଆମ ଦେଶରେ ଯେମିତି ଆମ୍ବ କ ପିଜୁଳି ଗଛ ପ୍ରତ୍ୟେକଙ୍କ ବାଡ଼ିରେ ପାଇବ ସେମାନଙ୍କ ଦେଶରେ ସେମିତି ସେଉ ନାସପାତି ଗଛ । ଗୋଟିଏ ଗୋଟିଏ ଗଛରେ ଏତେ ପରିମାଣରେ ଫଳେ ଯେ ଆମଦେଶରେ ଆମ୍ବ ଭଳି ଗଛରେ ନଷ୍ଟ ହୋଇଯାଏ ! ଗୋଟିଏ ଗୋଟିଏ ଗଛରୁ ଗାଡ଼ିଏ ଦୁଇଗାଡ଼ି ଲେଖାଏ ସେଓ ବାହାରେ । ଅନେକ ଲୋକ ସେମାନଙ୍କ ବାଡ଼ିରେ ଅଙ୍ଗୁର କରନ୍ତି । ଗୋଟିଏ ଗୋଟିଏ ଅଙ୍ଗୁର ମଞ୍ଚା ଓ ସେଥିରେ ଅଙ୍ଗୁର ଯେମିତି ପେନ୍ଥା ପେନ୍ଥା ହୋଇ ଫଳିଥାଏ ଦେଖିଲେ, ପେଟ ପୂରିଯିବ । ଏହି ଫଳର ପ୍ରାଚୁର୍ଯ୍ୟଯୋଗୁ ସେ ଦେଶରେ ସେଓ, ନାସପାତି, ଅଙ୍ଗୁର ଆଦି ଖାଇ ଶସ୍ତା ଏମିତି କ ଆମ ଦେଶରେ ପିଜୁଳି ବି ଏତେ ଶସ୍ତା ନୁହେଁ । ତାଛଡ଼ା ଚେରି, ବ୍ଲୁବେରି, ରସ୍ପବେରୀ ଆଦି ଫଳଅଛି

ବାଡ଼ିବଗିଚା ପ୍ରତି ଗୃହିଣୀମାନଙ୍କର ଯତ୍ନ ବେଶି । ସେମାନେ ତହିଁରେ ରହନ୍ତି, ତେଣୁ ବଗିଚାପାଇଁ ନାନାପ୍ରକାର ଯୋଜନା କରନ୍ତି । ବାଡ଼ି ବଗିଚା କରିବାପାଇଁ ସେ ଦେଶରେ ନାନାପ୍ରକାର ବହି ଓ ମାସିକ ପତ୍ରିକା ମିଳେ । ସେମାନେ ସେଗୁଡ଼ିକୁ କିଣି ପଢ଼ନ୍ତି ଓ ସେଇ ଅନୁସାରେ ଯୋଜନା କରି ସ୍ୱାମୀ ସହିତ ଆଲୋଚନା କରନ୍ତି । କୌଣସି ଯୋଜନା ଉଭୟଙ୍କ ଦ୍ୱାରା ପାଶ୍ ହେଲେ କାର୍ଯ୍ୟରେ ପରିଣତ କରାଯାଏ । ତେଣୁ ଆମେରିକାନ୍‌ମାନେ ଯେଉଁ ବାଡ଼ି ବଗିଚା କରନ୍ତି ସେହି ବାଡ଼ି ବଗିଚାରେ ମାର୍କିନ ଗୃହିଣୀର ଭୂମିକା ଅତ୍ୟନ୍ତ ବେଶି ।

—-·-

## ଦଶମ ଅଧ୍ୟାୟ

# ଆମେରିକା ପରିବାରରେ ଯାନ୍ତ୍ରିକ ସୁବିଧା

ମୁଁ ପୂର୍ବରୁ କହିସାରିଛି ଯେ ଆମେରିକାର ସ୍ତ୍ରୀ ଲୋକମାନେ ଘରର ଯାବତୀୟ କାମ ନିଜେ ହାତରେ କରନ୍ତି । ଚାକରାଣୀ ରଖିବା ସେମାନଙ୍କ ଶକ୍ତି ବାହାରେ । ଆମେରିକାରେ ଜଣେ ଯଦି ସବୁଦିନିଆ ଚାକରଟିଏ ରଖିବ ତେବେ ତାକୁ ମାସିକ ଯା' ଦରମା ଦେବାକୁ ପଡ଼ିବ, ଆମେ ଶୁଣିଲେ ଆଖି କାଢ଼ି ପକାଇବା କଥା । ଆମେରିକାରେ ଯଦି ଚାକରଟି କି ଚାକରାଣୀଟିଏ ରଖିବ ତେବେ ସେ ମାସକୁ ଦରମା ନେବ ଆମ ଭାରତୀୟ ଟଙ୍କାରେ ପ୍ରାୟ ଦୁଇ ହଜାର ଟଙ୍କା । କାରଣ ଆମେରିକାରେ ଯେତେ ଛୋଟ କାମଟିଏ କଲେ ବି ଜଣେ ଲୋକ ମାସକୁ ଦୁଇହଜାର ଟଙ୍କାରୁ କମ୍ ଦରମା ପାଇବ ନାହିଁ । ତେଣୁ ଏତେ ପଇସା ଦେଇ ପୁଣି ସମସ୍ତ ଖଟିଲା ଭଳି ଚାକର କି ଚାକରାଣୀଟିଏ ରଖିବା ଶକ୍ତିବାହାର ? ଏହି ହେତୁରୁ ଆମେରିକାର ସାଧାରଣ ଲୋକେ ଚାକର କି ଚାକରାଣୀ ରଖିବା ସ୍ୱପ୍ନ ଦେଖିପାରନ୍ତି ନାହିଁ । ଆମେରିକାରେ ଯେଉଁମାନେ ଖୁବ୍ ଧନୀ, ଅବସ୍ଥାପନ୍ନ, ସେମାନେହିଁ ଯା ଚାକର୍ କି ଚାକରାଣୀ ରଖନ୍ତି । ଘରର ଚାକର ଚାକରାଣୀ କାମକରିବାପାଇଁ ନିଗ୍ରୋମାନଙ୍କ ଛଡ଼ା ପ୍ରାୟ ଅନ୍ୟମାନେ ଆସନ୍ତି ନାହିଁ । ଠିକା ହିସାବରେ ଚାକର କି ଚାକରାଣୀ ରଖିଲେ ସେମାନେ ଘଣ୍ଟାକ ପାଇଁ ଯା' ନେବେ ଆମେ ଧାରଣା

କରି ପାରିବା ନାହିଁ । ଏହି ହେତୁରୁ ଆମେରିକାର ଶତକଡ଼ା ନବେ ଭାଗ ଲୋକ ଚାକର ନଁା ଧରନ୍ତି ନାହିଁ । ସେଥିପାଇଁ ସେ ଦେଶର ସ୍ତ୍ରୀ ଲୋକମାନେହିଁ ଘରର ସବୁକାମ କରନ୍ତି ।

ସେମାନେ ସିନା ସବୁ କାମ କରନ୍ତି, କିନ୍ତୁ ହାତରେ କରନ୍ତି ଖୁବ୍ କମ୍ । ନାନା ପ୍ରକାର ଯନ୍ତ୍ରପାତି ସେମାନଙ୍କୁ କାମରେ ସାହାଯ୍ୟ କରୁଥାଏ । କାମ କରି କରି ହାଲିଆ ହୋଇପଡ଼ିବା ଦେଖାଯାଏନି । କାମ ଭିତରେ ଚାଲିଥାଏ ଗୀତ ଶୁଣା ନାଚ ଦେଖା । ସକାଳୁ ଉଠିଲା ବେଳରୁ ରାତିରେ ଶୋଇଲା ପର୍ଯ୍ୟନ୍ତ ସେମାନେ ନିଜ କାମ ଭିତରେ ଜୀବନ ଉପଭୋଗ କରିବାର ଉପାଦାନ ଗୁଡ଼ିକୁ ମଧ୍ୟ ଭୁଲନ୍ତି ନାହିଁ । ତେଣୁ ସେମାନଙ୍କ କାମ ଭିତରେ ଜୀବନ ଉପଭୋଗ ବି ଚାଲିଥାଏ । ପ୍ରାତଃ କର୍ମଭିତରେ ଘର ଓଳାଇବା ଘର ସଫାକରିବା ଗୋଟିଏ ପ୍ରଧାନ କାମ । ସେଥିପାଇଁ ନିଜ ହାତରେ କିଛି କାମ ନ କରି ଯନ୍ତ୍ର ସାହାଯ୍ୟରେ କାମ କରନ୍ତି ।

## ଘର ଓଳା ଯନ୍ତ୍ର

ଆମେ ଝାଡ଼ୁ ଣ୍ଡି ପହଁରା ସାହାଯ୍ୟରେ ଘର ଓଳାଉଁ । ସେମାନଙ୍କର ଯେ ଝାଡ଼ୁଣୀ କି ପହଁରା ନାହିଁ ତା'ନୁହେଁ । ସେମାନଙ୍କ ଝାଡ଼ୁଣୀ ବିଚିତ୍ର ଧରଣର । ସେମାନଙ୍କ ଝାଡ଼ୁଣୀ ଆମ ଭଳି ଖଜୁରୀ ଗଛର ପତ୍ର ନୁହେଁ । ଅଲଗା ପ୍ରକାରର । ଏହା ସହିତ ଗୋଟିଏ ପ୍ରକାଣ୍ଡ ବାଡ଼ ଲାଗିଥାଏ । ସେମାନେ ଏହି ବାଡ଼ଭଳି ହେଣ୍ଡେଲ ସାହାଯ୍ୟରେ ଠିଆହୋଇ ଘର ଓଳାନ୍ତି । ଆମଭଳି ନଇଁ ପଡ଼ିବା ଦରକାର ନାହିଁ । ସେମାନେ ଠିଆହୋଇ କାମ କରିଯାନ୍ତି । ସେମାନଙ୍କ ଝାଡ଼ୁଣୀ ମୂଠା ସହିତ ବେଶ୍ ବଡ଼ ଓ ମୋଟା ବାଡ଼ ଲାଗିଥିବାରୁ ଏହାକୁ ସେମାନଙ୍କ ଦେଶରେ ବୋଧହୁଏ 'ବ୍ରୁମ୍‌ଷ୍ଟିକ୍' କହିଥାନ୍ତି ।

ଆମେରିକାର ଯେଉଁମାନଙ୍କ ଘରେ ଘର ଓଳାଇବା ଯନ୍ତ୍ର ନାହିଁ ସେମାନେ ସାଧାରଣତଃ ଏହି ଗୃହିଣୀ ସାହାଯ୍ୟରେ ଘର ଓଳାନ୍ତି । କିନ୍ତୁ ଆମେରିକାର ଅଧିକାଂଶଙ୍କ ଘରେ ଘର ଓଳାଯନ୍ତ୍ରର ବ୍ୟବହାର । ଏହି ଯନ୍ତ୍ର ବିଭିନ୍ନ ପ୍ରକାରର ଅଛି । ଏହି ଯନ୍ତ୍ର ଭାକ୍ୟୁମ୍ ପଦ୍ଧତିରେ ଚଳେ । ଏହି ଯନ୍ତ୍ରର ପଛପାଖରେ ଗୋଟିଏ ବେଗ୍ ଥାଏ । ଏହି ଯନ୍ତ୍ରଟିକୁ ଘରର ଚଟାଣ ଉପରେ ଚଳାଇ ନେଲେ ଏହା ଧୂଳି ମଳି ଚକ ଶୋଷିନେଇ ସେହି ବେଗ୍ ଭିତରେ ଜମା କରିଦିଏ । ଏହି ଯନ୍ତ୍ର ସାହାଯ୍ୟରେ ଖୁବ୍ ଅଳ୍ପ ସମୟ ମଧ୍ୟରେ ଗୋଟିଏ ପ୍ରକାଣ୍ଡ ଘରର ଚଟାଣକୁ ପୁରାପୁରି ପରିଷ୍କାର କରିହେବ । ଏହି ଯନ୍ତ୍ରରେ ପରିଶ୍ରମ ନାହିଁ । ଅଥଚ କାମଟା ଖୁବ୍ ସୁନ୍ଦର ହୁଏ । ଏହି ଯନ୍ତ୍ର ବିଦ୍ୟୁତ୍ ଶକ୍ତି ଦ୍ୱାରା ଚଳେ । ଏହି ଯନ୍ତ୍ରର ପ୍ଲଗ୍‌କୁ ଘରର ସକେଟ ଭିତରେ ପୁରାଇ ଚଟାଣରେ ଦେଖାଇ ଆଣିଲେ ଚଟାଣ ବେଶ୍ ପରିଷ୍କାର ହୋଇଯାଏ । ଚଟାଣକୁ ଯଦି ସାବୁନ୍ ପାଣିରେ ଧୋଇ ଚକ୍‌-ଚକ୍ କରିବାକୁ ହୁଏ, ତେବେ ସେଥିପାଇଁ ଆଉ ଏକ ଯନ୍ତ୍ର ଅଛି । ଏହି ଯନ୍ତ୍ର ସାବୁନ ପାଣି ପକାଇ ଘରକୁ ବେଶ୍ ନିର୍ମଳ କରିପାରୁଛି । ଏହି ଯନ୍ତ୍ର ଗୁଡ଼ିକର ଦାମ୍ ମଧ୍ୟ ବେଶି କିଛି ନୁହେଁ । ଆମେରିକାର ସାଧାରଣ ଗୃହସ୍ଥର ଶକ୍ତିର ବାହାରେ ନୁହେଁ । ଆମେରିକାର ରାସ୍ତାଘାଟ ରାତି ଅଧରେ ଏହିଭଳି ବଡ଼ ବଡ଼ ସଫାକରିବା ଯନ୍ତ୍ର ସାହାଯ୍ୟରେ ସଫା ହୁଏ ।

## ଲୁଗା ସଫା କଳ

କଥାରେ କହନ୍ତି, "ଗାଁ ପରିମଳ ଧୋବା ତୁଠରୁ ଜଣାପଡ଼େ ।" ଅର୍ଥାତ୍ କେଉଁ ଗାଁର ଲୋକେ କେତେ ସଫାସୁତୁରା, ତାହା ସେହି ଗାଁର ଧୋବା ତୁଠକୁ ଗଲେ ଜଣାପଡ଼େ । କାରଣ ଧୋବା ତୁଠରେ ଗାଁଲୋକଙ୍କ ଲୁଗାପଟା କଷ୍ଟ ହେବା ପାଇଁ ଆସିଥାଏ ।

ସେହି ଲୁଗା ଦେଖି ଜାଣିହେବ ଯେ ସେହି ଗାଁର ଲୋକେ କେମିତି ସଫା ସୁତୁରା । ଲୁଗା ଯଦି କୋଟଟ ମଳି ହୋଇଥାଏ, ତେବେ ଜାଣିବାକୁ ହେବ ଯେ ସେହି ଗାଁର ଲୋକେ ନିହାତି ଅପରିଷ୍କାର । ଲୁଗା ଯଦି ଖୁବ୍ କମ ମଇଳା ହୋଇଥାଏ, ତେବେ ସେହି ଗାଁର ଲୋକମାନଙ୍କର ସଫା ସୁତୁରା ଜ୍ଞାନ ଅଛି ବୋଲି ଜାଣିବାକୁ ହେବ । ଏଇ ଯେଉଁ କଥାଟି ଅଛି, ତାହା ପୁରୁଣାକାଳିଆ କଥା ହେଲେହେଁ ଆଧୁନିକ ବିଜ୍ଞାନ ଯୁଗରେ ଏହାର କିଛି ସତ୍ୟତା ନାହିଁ । କାରଣ ଆଧୁନିକ ବିଜ୍ଞାନ ଆମକୁ ଆଣି ଏମିତି ଏକ ଯୁଗରେ ପହଞ୍ଚାଇ ଦେଲାଣି ଯେଉଁ ଯୁଗରେ ସେହି କଥାର କିଛି ମହତ୍ତ୍ୱ ନାହିଁ । ବିଶେଷତଃ ଆମେରିକା ଭଳି ବିଜ୍ଞାନୋନ୍ନତ ଦେଶରେ ସେହି କଥାର ଯେ କିଛି ମୂଲ୍ୟ ନାହିଁ ଯେଉଁମାନେ ଆମେରିକା ଯାଇଛନ୍ତି, ସେମାନେ ନିଶ୍ଚୟ ଉପଲବ୍ଧି କରି ପାରୁଥିବେ ।

ଆମେରିକା ଭଳି ଦେଶରେ ଧୋବା ତ ନାହାନ୍ତି, ଧୋବା କୁଆଡ଼ୁ ଆସିବ ବା କେଉଁଠୁ ? ସେ ଦେଶରେ ଯଦି ଧୋବା ନାହାନ୍ତି, ତେବେ ସେ ଦେଶର ଲୁଗାପଟା ପୋଷାକପତ୍ର ଆଦିକୁ ପରିଷ୍କାର କରୁଛି କିଏ ? ଏହାର ଉତ୍ତରରେ କୁହାଯିବ ଯେ ଆମେରିକାରେ କଳ ଏ ଧିନ୍ଦା କରୁଛି । ଆମେରିକାରେ ଲୋକେ ବହୁତ କାମ ହାତରେ ନ କରି କଳ ବା ଯନ୍ତ୍ର ସାହାଯ୍ୟରେ କରନ୍ତି । ସେହି ସବୁ କଳ ମଧ୍ୟରେ 'ଲୁଗା ସଫା କଳ' ଗୋଟିଏ ।

'ଲୁଗାସଫା କଳ' କାନକୁ ଟିକିଏ ଅଡ଼ୁଆ ଅଡ଼ୁଆ ଶୁଭୁଛି, ନୁହେଁ ? ଆମ ଦେଶରେ ଆମେ ଜାଣିଛୁ, ଧାନକୁଟା କଳ, ଅଟା-ପେଷା କଳ, ବରଫ କଳ । କିନ୍ତୁ ଲୁଗାସଫା କଳ ନାଁ ତ ଆମେ ଶୁଣିନୁ । ତେବେ ଏ ଯେ ସେହିଭଳି କଳ ଭିତରୁ ଗୋଟିଏ ଏଥିରେ ସନ୍ଦେହ ନାହିଁ ।

ଆମେ ଯେଉଁଦିନ ଆମେରିକା ଆସିଲୁ, ସେବାପଟ୍ଟୁଲେ ଆମ ଆଖି ଆଗରେ ପଡ଼ିଲା ଏହି ଲୁଗାସଫା କଳ। ଯେଉଁ ଭଦ୍ର-ଲୋକଙ୍କ ଘରେ ଭଡ଼ା ନେଇ ପ୍ରଥମେ ଆସି ଆମେ ରହିଲୁ ତାଙ୍କର ଘରେ ଯନ୍ତ୍ରରେ ଲୁଗା ସଫା ହେବା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ଆମେରିକା ଆସିବା ପୂର୍ବରୁ ଆମେ 'ଲୁଗାସଫା କଳ' କଥା ଶୁଣିଥିଲେହେଁ ଦେଖିବାର ସୌଭାଗ୍ୟ କେବେ ଜୁଟି ନ ଥିଲା।

ଆମେରିକାରେ ଲୁଗାସଫା କଳ'ର ପ୍ରସାର ଖୁବ୍ ଅଧିକ। ଅଧିକାଂଶ ଲୋକଙ୍କ ଘରେ ଏହି କଳ ଅଛି। ଏହି କଳର ଦାମ୍ ମଧ୍ୟ ବେଶୀ ନୁହେଁ। ଆଠ ନ' ଶହ ଟଙ୍କା ହେଲେ ଏଭଳି କଳ ଗୋଟିଏ କଣି ହେବ। ଏହି କଳ ଚାଲେ ବିଜୁଳିଶକ୍ତି ସାହାଯ୍ୟରେ, ପୂରାପୂରି ଅଟୋମେଟିକ୍। ଏହି କଳ ଦେଖିବାକୁ ଗୋଟିଏ ବଡ଼ବାକ୍ସ ଭଳି। ଲମ୍ବା, ଚଉଡ଼ା, ଉଚା ପ୍ରାୟ ତିନିଫୁଟ ଲେଖାଏଁ ହେବ। ଉପର ପାଖରେ ଏହାକୁ ଖୋଲିବାପାଇଁ ଦୁଆର ଲାଗିଛି। ଆକାରରେ ଦେଖିବାକୁ ଗୋଲ ଗୋଲ କଳମଧ୍ୟ ଅଛି। ଇସ୍ପାତ ଚାଦରରେ ଏହା ତିଆରି ହୋଇ ଏହା ଉପରେ ବହଳ ରଙ୍ଗ ଦିଆଯାଇଥାଏ, ଏହା ଶୀଘ୍ର ଖରାପ ନ ହେବା ପାଇଁ। ଏହି ବାକ୍ସ ମଝିରେ ଏକ ପ୍ରକାର ମୂଷଳଲାଗିଥାଏ ଓ ସେହି ମୂଷଳରେ ଚାରୋଟି ପଖା ଲାଗିଥାଏ। ଏହି ମୂଷଳ ଖୁବ୍ ଜୋରରେ ଘୂରି ମଇଳା ଲୁଗାକୁ ପରିଷ୍କାର କରେ। ଏହି କଳ ଭିତରକୁ ଥଣ୍ଡା ଓ ଗରମ ଜଳ ଆସିବା ପାଇଁ ଅଲଗା ଅଲଗା ବାଟ ଅଛି। ଯନ୍ତ୍ରର ସାମନା ପଟେ ଯନ୍ତ୍ର ଭିତରେ ଲୁଗା କେମିତି ସଫା ହେଉଛି, ଦେଖିବାପାଇଁ କାଚ ଝରକା ଲାଗିଛି। ଏହି ଯନ୍ତ୍ର ଭିତରୁ ଲୁଗାଧୂଆ ମଇଳା ପାଣି ବାହାରିଯିବା ପାଇଁ ଅଲଗା ବାଟ ଅଛି।

ଲୁଗା ସଫା କରିବାକୁ ହେଲେ ପ୍ରଥମେ ମଇଳା ଲୁଗା ଆଣି ଉପର ପାର୍ଶ୍ଵ କବାଟ ଖୋଲି ଏହି କଳ ଭିତରେ ପକାଇବାକୁ ପଡ଼େ । ଥରକେ ବହୁତ ଲୁଗାପଟା, ଜାମା, ପେଣ୍ଟ ଇତ୍ୟାଦି ସଫା କରିହୁଏ । ଲୁଗା ପରିମାଣ ଅନୁସାରେ ସାବୁନ୍‌ଗୁଣ୍ଡ ଓ ଲୁଗା ସଫା କରି ଏକ ପ୍ରକାର ପାଉଡ଼ର ପକାଇବାକୁ ପଡ଼େ । ତତ୍ପରେ କବାଟ ବନ୍ଦକରି ସୁଇଚ୍ ଟିପିଲାକ୍ଷଣି ଏହି କଳ ଭିତରକୁ ଗରମ ପାଣି ଯେତିକି ଆବଶ୍ୟକ ଠିକ୍ ସେତିକି ଗରମପାଣି ପାଇପ୍‌ରୁ ଆପେ ଆପେ ଚାଲିଆସେ । ତାପରେ ଏହା ମଝିରେ ଥିବା ମୂଷଳଟି ମନକୁ ମନ ଘୂରେ । ମୂଷଳ ଘୂରିଲେ ମଇଳା ଲୁଗାତକ ସେହି ଗରମ ସାବୁନ ମିଶା ପାଣିରେ କାଚ ହୋଇଯାଇ ସେଥିରେ ଲାଗିଥିବା ମଇଳାତକ ବାହାରିଯାଏ । ମୂଷଳ ପ୍ରାୟ ପନ୍ଦର ମିନିଟ ଘୂରିବା ପରେ ଆପେ ଆପେ ବନ୍ଦ ହୋଇଯାଏ ଓ କଳ ଭିତରେ ଥିବା ମଇଳା ଗରମ ପାଣିତକ ବାହାରିଯାଇ ତା ସ୍ଥାନରେ ପରିଷ୍କାର ପାଣି ପଶେ । ସେ ପାଣି ପୁଣି କିଛି ସମୟପରେ ବାହାରି ଯାଏ ଓ ଲୁଗାତକ ପୂରାପୂରି ପରିଷ୍କୃତ ହେଲା ପର୍ଯ୍ୟନ୍ତ ପରିଷ୍କାର ପାଣି ପଶୁଥାଏ ଓ ମଇଳା ପାଣିତକ ବାହାରି ଯାଉଥାଏ । ମଇଳାତକ ବାହାରିଗଲେ ଆଉ ପାଣି ପଶେନି ଓ ମୂଷଳ ସେହି ଓଦାଲୁଗା ସହିତ ଖୁବ୍ ଜୋରରେ ଘୂରେ, ଫଳରେ ଲୁଗାରେ ଯେଉଁ ପାଣିତକ ଥାଏ, ତାହା ଏଭଳି ଘୂରିବା ଫଳରେ ଚିପୁଡ଼ି ହୋଇ ବାହାରିଯାଏ । ଏହି ଲୁଗା ଚିପୁଡ଼ା ପାଇଁ ପ୍ରାୟ ପାଞ୍ଚ ମିନିଟ ସମୟ ଲାଗେ । ଲୁଗା ଚିପୁଡ଼ା ସରିଗଲେ କଳ ମନକୁ ମନ ବନ୍ଦହୋଇ ଯାଏ । କବାଟ ଖୋଲିଲାକ୍ଷଣି ଲୁଗା ଚିପୁଡ଼ା ହୋଇ ମୂଷଳ ପାଖରେ ଥୁଆ ହୋଇଯାଏ । ଏହି ଚିପୁଡ଼ା ଲୁଗାତକ ଆଣି ବାହାରେ ଶୁଖାଇ ଦେଲେ ଶୁଖିଯାଏ ।

## ଲୁଗା ଶୁଖାଇବା ଯନ୍ତ୍ର

ଲୁଗା ଶୁଖାଇବା ପାଇଁ ଆଉ ଏକ ପ୍ରକାର ଯନ୍ତ୍ର ଅଛି । ଏହାକୁ ଲୁଗାଶୁଖା ଯନ୍ତ୍ର କହନ୍ତି । ଏହି ଯନ୍ତ୍ରରେ ଓଦାଳିଆ ଲୁଗାତକ ଥୋଇ ସୁଇଚ ଟିପିଲାକ୍ଷଣି ତା ଭିତରେ ଥିବା ଗରମ ପବନରେ ଘୂରିଘୂରି ପ୍ରାୟ ଦଶ ମିନିଟ୍ ଭିତରେ ଶୁଖିଯାଏ । ଲୁଗା ଶୁଖିଗଲେ ତା'କୁ ଆଣି ଇସ୍ତ୍ରୀ କରି ରଖନ୍ତି ।

ଇସ୍ତ୍ରୀ କରିବା ପାଇଁ ଏ ଦେଶର ଲୋକେ ଆମ ଦେଶରେ ମିଳୁଥିବା ଇଲେକ୍‌ଟ୍ରିକ୍ ଇସ୍ତ୍ରୀ ବ୍ୟବହାର କରନ୍ତି ସତ, କିନ୍ତୁ ସେ ଇସ୍ତ୍ରୀରେ ଜଳୀୟବାଷ୍ପ ଆପେ ଆପେ ବାହାରିବା ବନ୍ଦୋବସ୍ତ ଥାଏ । ଲୁଗା ଇସ୍ତ୍ରୀ କଲାବେଳେ ଇସ୍ତ୍ରୀରୁ ବାଷ୍ପ ବାହାରି ଲୁଗାକୁ ସାମାନ୍ୟ ଓଦା କରିଦିଏ, ଫଳରେ ତା' ଉପରେ ଭଲ ଇସ୍ତ୍ରୀ ହୁଏ । ଇସ୍ତ୍ରୀ କରିବା ପୂର୍ବରୁ ଆମ ଦେଶରେ ଯେମିତି ପାଣି ଛିଞ୍ଚିବାକୁ ପଡ଼େ, ତା' ଏଠି ଦରକାର ନାହିଁ ।

ପୁଣି ଲୁଗା କମ୍ପା ଜାମାକୁ ଟାଣକରି ଇସ୍ତ୍ରୀ କରିବାକୁ ହେଲେ ଆମ ଲୁଗାରେ ମଇଦା; ଆଗରୁ ଟ କମ୍ପା ପେଜମଣ୍ଡ ଦେବାକୁ ପଡ଼େ । କିନ୍ତୁ ଏ ଦେଶରେ ସେମିତି କରିବାକୁ ପଡ଼େ ନା । ଫେଣା ମଣ୍ଡଥିବା ଏକ ପ୍ରକାର ସ୍ପ୍ରେ ଏ ଦେଶରେ ମିଳେ । ଲୁଗା ଇସ୍ତ୍ରୀ କଲାବେଳେ ସେହି ସ୍ପ୍ରେରୁ ଲୁଗା ଉପରେ କିଛି ମଣ୍ଡ ଛିଞ୍ଚିଦେଇ ଇସ୍ତ୍ରୀ କଲେ ଲୁଗା କମ୍ପା ଜାମା ଟାଣ ହୋଇ ଇସ୍ତ୍ରୀ ହୋଇଯାଏ । ଆମ ଦେଶ ଧୋବାଙ୍କ ଭଳି ପେଜମଣ୍ଡ ମିଶା ପାଣିରେ ଲୁଗାକୁ ବୁଡ଼ାଇ ଶୁଖାଇବା ଦରକାର ନାହିଁ । ଏ ଦେଶରେ ଏହି କାମ ଏଭଳି-ଭାବରେ ବୈଜ୍ଞାନିକ ଭିତ୍ତିରେ କରାଯାଏ ଯେ ଘରର ଗାଢ଼ଏ ଲୁଗା

ସଫାକରି ଶୁଖାଇ ଇସ୍ତ୍ରୀ କରି ରଖିବାକୁ ଘଣ୍ଟାଏ ଦେଢ଼ଘଣ୍ଟାରୁ ଅଧିକ ସମୟ ଲାଗେ ନାହିଁ ଓ ସେଥିପାଇଁ ଖୁବ୍ କମ୍ ଶାରୀରିକ ପରିଶ୍ରମ କରିବାକୁ ପଡ଼େ ।

ଆମେରିକାର ପ୍ରତ୍ୟେକ ଘରେ ଯେ ଏଭଳି ଲୁଗାସଫା କଳ ଅଛି, ତା ନୁହେଁ । ବହୁ ଲୋକ ନାନା କାରଣରୁ ସେମାନଙ୍କ ଘରେ ଲୁଗାସଫା କଳ ରଖି ନଥାନ୍ତି । ତାହେଲେ ସେମାନେ କେମିତି ଲୁଗା ସଫା କରନ୍ତି ?

ଆମେରିକାର କ ସହର କ ମଫସଲ ସବୁଆଡ଼େ 'ଲଣ୍ଡ୍ରୋମା' ଥିବାକଥା ପୂର୍ବରୁ କୁହାଯାଇଛି । ସେଥିରେ ଏ ସବୁ ଲୁଗା ସଫା ହୁଏ ।

ଠାଏ ଠାଏ ସାଧାରଣ ଲଣ୍ଡ୍ରୋମା ବ୍ୟତୀତ ଗରମ ପୋଷାକ ସଫାକରିବା ପାଇଁ ଲଣ୍ଡ୍ରୋମା ଦେଖାଯାଏ । ଏଥିରେ ସାଧାରଣ ଲଣ୍ଡ୍ରୋମାଠାରୁ ଅଧିକ ପଇସା ଦେବାକୁ ପଡ଼େ । ଏଥିରେ ସାବୁନ ପାଣି ବ୍ୟବହୃତ ନହୋଇ ଗରମ ପୋଷାକ ସଫାକରା ପେଟ୍ରୋଲ ବ୍ୟବହୃତ ହୁଏ । ଏହାର କାମ ଠିକ୍ ସାଧାରଣ ଲୁଗା ସଫା କଳ ଭଳି । ଗରମ ଲୁଗାକୁ ପ୍ରଥମେ ଏହି ଯନ୍ତ୍ରରେ ଭରିତକରି ପଇସା ପକାଇ ଯନ୍ତ୍ରକୁ ଚଳାଇଲାକ୍ଷଣି କଳ ଭିତରକୁ ପେଟ୍ରୋଲ ଆସି ଲୁଗାକୁ ବୁଡ଼ାଇ ଦିଏ । ତତ୍‌ପରେ ସେହି ମୁଷଳ ବୁଲେ । ମୁଷଳ ଘୁରିଲେ ଗରମ ଲୁଗାର ମଇଳାତକ ବାହାରିଯାଏ । କିଛି ସମୟ ପରେ ଲୁଗାସଫା ହୋଇଗଲେ ମଇଳା ପେଟ୍ରୋଲ ବାହାରିଯାଏ । ତାପରେ ଲୁଗା ତକ ମୁଷଳ ସାହାଯ୍ୟରେ ଘୁରି ଘୁରି ଶୁଖିଯାଏ । ଲୁଗା ଶୁଖିଗଲା କ୍ଷଣି ଯନ୍ତ୍ର ମନକୁମନ ବନ୍ଦ ହୋଇଯାଏ । ଠାଏଠାଏ ଲଣ୍ଡ୍ରୋମାରେ ଗରମ ପୋଷାକ ସଫାକଲେ ଆଇସକ୍ରିମ୍ ଅବା ଉପହାର ମିଳେ ।

ଏସବୁ ଛଡ଼ା ଆମ ଦେଶରେ ଯେମିତି ଲଣ୍ଡ୍ରି ଅଛି, ସେ ଦେଶରେ ସେମିତି ଲଣ୍ଡ୍ରି ମଧ୍ୟ ଅଛି । ଗରମ ପୋଷାକ, ରେଶମ ପୋଷାକ ଓ କୋଟ ପେଣ୍ଟ ପ୍ରଭୃତି ପୋଷାକପତ୍ର, ଯେଉଁଗୁଡ଼ିକୁ ଘରେ କାଚି ବ୍ୟବହାର କରିବା ସୁବିଧାଜନକ ନୁହେଁ, ସେଗୁଡ଼ିକୁ ଲୋକେ ଏହି ଲଣ୍ଡ୍ରିରେ ଦିଅନ୍ତି । ଲଣ୍ଡ୍ରିରେ ନାନା ଉପାୟରେ ଲୁଗା ସଫା କରାଯାଏ । ଲଣ୍ଡ୍ରିରେ ଲୁଗା ଆଦି ଇସ୍ତ୍ରୀ କରିବା ପାଇଁ ଘରୋଇ ସାଧାରଣ ଇସ୍ତ୍ରୀ ବ୍ୟବହୃତ ହୁଏ ନାହିଁ । ଲଣ୍ଡ୍ରିମାନଙ୍କରେ ଜାମା ପେଣ୍ଟ, କୋଟ ଆଦି ଇସ୍ତ୍ରୀ କରିବାପାଇଁ ଏକ ପ୍ରକାର କଳ ଅଛି । ତା'କୁ 'ଇସ୍ତ୍ରୀ କରା କଳ' ବୋଲାଯାଏ । ଏଥିରେ ସାର୍ଟର,କୋର୍ଟର ହାତ, ପେଣ୍ଟର ଗୋଡ଼ ଆଦି ଏକାଥରକେ ଇସ୍ତ୍ରୀ ହୋଇଯାଏ । ଗୋଟିଏ ଗୋଟିଏ ପେଣ୍ଟ କିମ୍ବା କୋର୍ଟକୁ ଇସ୍ତ୍ରୀ କରିବାପାଇଁ ମିନିଟିଏ ଦି'ମିନିଟିରୁ ବେଶୀ ସମୟ ଲଗେ ନାହିଁ । ଲୋକମାନଙ୍କର ପରିଶ୍ରମକୁ ଲାଘବ କରିବାପାଇଁ ଆମେରିକାରେ ଯେଉଁ ହଜାର ହଜାର ଯନ୍ତ୍ରପାତି ଓ କଳକବ୍‌ଜା ବ୍ୟବହୃତ ହୁଏ ସେଥିଭିତରୁ ଏସବୁ ଗୋଟିଏ ଗୋଟିଏ । ଲଣ୍ଡ୍ରିରେ ଖଣ୍ଡିଏ କାମିଜ ସଫା କରିବାକୁ ପ୍ରାୟ ଦେଢ଼ ଟଙ୍କା ପଡ଼େ ।

## ବାସନ ମଜା ଯନ୍ତ୍ର

ଜଣେ ସାଧାରଣ ଗୃହସ୍ଥ ପରିବାରର ବାସନ ମାଜିବା ଗୋଟିଏ କଷ୍ଟ କାମ । ପ୍ରତିଦିନ ଗୋଟିଏ ଗୋଟିଏ ସାଧାରଣ ପରିବାରରେ ଏତେ ପରିମାଣରେ ବାସନ ସଫା କରିବାକୁ ପଡ଼େ, ଯେ ଜଣେ ଚାକର କି ଚାକରାଣୀ ନ ରଖିଲେ ଚଳେନି । କାରଣ ଏଟା ବେଶ କଷ୍ଟକାମ । କିନ୍ତୁ ଆମେରିକାରେ ସ୍ତ୍ରୀ ଲୋକମାନେ ନିଜ ନିଜ ବାସନ ନିଜେ ନିଜେ ଧୋଇ ପକାନ୍ତି । ଚାକର ନ

ସୃକରଣୀ ରଖନ୍ତି ନା । ଖାଇ ସାରିଲେ ବାସନକୁ ଅଇଁଠା ଲାଗିଥିବା ଅବସ୍ଥାରେ ପକାଇ ନ ଦେଇ ଧୋଇଧାଇ ପରିଷ୍କାର କରି ରଖି ଦିଅନ୍ତି । କିନ୍ତୁ ଅଧିକାଂଶ ଘରେ ବାସନ ମଜା ଯନ୍ତ୍ର ଅଛି । ଏ ଯନ୍ତ୍ର ବେଶ୍ ଗୋଟିଏ ମଜା ଯନ୍ତ୍ର । ଦେଖିବାକୁ ଅନେକାଂଶରେ ଲୁଗାସଫା ଯନ୍ତ୍ର ଭଳି । ଏହି ଯନ୍ତ୍ରରେ ଅଇଁଠା ବାସନଗୁଡ଼ିକ ପକାଇ ଯନ୍ତ୍ର ଭିତରେ କିଛି ସାବୁନଗୁଣ୍ଡ ପକାଇ ଯନ୍ତ୍ରକୁ ଚଳାଇ ଦେଲେ ଏହା ଭିତରକୁ ଗରମପାଣି ଚାଲିଆସେ । ଏହି ଗରମ ପାଣିରେ ସାବୁନ ଗୁଣ୍ଡ ମିଶି ବାସନଗୁଡ଼ିକୁ କାଚ କ ଚ ହଲାଇ ହଲାଇ ସଫା କରିଦିଏ । ତା'ପରେ ମନକୁ ମନ ମଇଳାପାଣି ଧୋଇଯାଏ । ପୁଣି ଭଲପାଣି ଆସି ବାସନ କୁସନଗୁଡ଼ିକୁ ସଫାକରି ଧୋଇଦିଏ । ଦୁଇ ଚାରିଥର ଏମିତି ହୋଇ ବାସନ ବେଶ୍ ପରିଷ୍କାର ହୋଇଯାଏ । ତାପରେ ମନକୁ ମନ ବାହାର ଆସି ବାହାରେ ରହିଯାଏ । ଆଉ କେତେକ ଯାଗାରେ ଶୁଖାଇବା ଯନ୍ତ୍ର ଭିତରକୁ ଚାଲିଯାଇ ଶୁଖିଲା ହୋଇଯାଏ । ଏହି ଯନ୍ତ୍ରଗୁଡ଼ିକ ପୁରାପୁରି ଅଟୋମେଟିକ୍, କେଉଁଠି କିଛି, କରିବା ଦରକାର ନାହିଁ । ଖାଇସାରି ଅଇଁଠା ବାସନଗୁଡ଼ିକ ଯନ୍ତ୍ରରେ ପକାଇଦେଇ ଯନ୍ତ୍ରକୁ ଚଳାଇ ବଜାର ବୁଲି ବାହାରିଗଲ, ଆସି ଦେଖିବ ବାସନ କୁସନ ସବୁ ଧୂଆମଜା ହୋଇ ଥୁଆ ହୋଇଛି ।

ଏହି ଯନ୍ତ୍ରର ଗୋଟିଏ ଅସୁବିଧା, ଚାଇନା ପ୍ଲେଟ, ପ୍ଲାସଟିକ୍ ପ୍ଲେଟ, ଷ୍ଟେନଲେସ୍ଷ୍ଟିଲ ଥାଳୀ, ତାଟିଆ ଛଡ଼ା ଆମର କଂସା ପିତ୍ତଳ ବାସନ ସଫା ହୋଇ ପାରିବ ନି । ଡେକଚି, କରେଇ, ହାଣ୍ଡି, ଆଟିକା ମଧ୍ୟ ସଫା ହେ ଇ ପ ରିବନି । ତେଣୁ ଆମେରିକାନ୍ ପରିବାରରେ ଡେକ୍‌ଚି, କରେଇ ଆଦି ହାତରେ ସାଧାରଣତଃ ସଫା କରାଯ ଏ ।

ଆମେରିକାର ବଡ଼ ବଡ଼ ରେଷ୍ଟୁରାଣ୍ଟମାନଙ୍କରେ ବଡ଼ ବଡ଼ ବାସନମଜା ଯନ୍ତ୍ର ବସିଛି । ଯେଉଁ ଯନ୍ତ୍ର ଏକକାଳୀନ ଶହ ଶହ ଲୋକଙ୍କ ଅଇଁଠା ବାସନ ମାଜି ସଫା କରି ଦେଇପାରିବ । ଆମେ ଏମିତି ଗୋଟିଏ ଯନ୍ତ୍ର ନାଏଗ୍ରା ଫଲ୍‌ସଠାରେ ଏକ ରେଷ୍ଟୁରାଣ୍ଟରେ ଦେଖିଥିଲୁଁ । ଆଉ ଗୋଟିଏ ଦେଖିଥିଲୁଁ ଓ୍ୱାସିଙ୍ଗଟନ୍‌ସ୍ଥିତ ପୃଥିବୀର ବୃହତ୍ତମ ପ୍ରାସାଦ ପେଣ୍ଟାଗନ ଭିତରେ ଥିବା ରେଷ୍ଟୁରାଣ୍ଟରେ । ଆମେ ପେଣ୍ଟାଗାନ ଭିତରେ ଥିବ ସେହି ରେଷ୍ଟୁରାଣ୍ଟରେ ମଧ୍ୟାହ୍ନ ଭୋଜନ କଲାବେଳେ ଏହି ଯନ୍ତ୍ରର କାମ ଦେଖି ଖୁସି ହୋଇ ଯାଇଥିଲୁଁ । ରେଷ୍ଟୁରାଣ୍ଟର ଗୋଟିଏ ପାଖରେ ଲୋକେ ଅଇଁଠା ବାସନ ରଖି ଦେଉଥାନ୍ତି । ଏହି ଅଇଁଠାବାସନ ମନକୁ ମନ ଯନ୍ତ୍ରଠାକୁ ଚାଲିଯାଉଥାଏ । ଯନ୍ତ୍ରରେ ସଫା ହୋଇ ଆଉ ପାଖରେ ଶୃଙ୍ଖଳ ହୋଇ ବାହାରି ରେଷ୍ଟୁରାଣ୍ଟକୁ ଚାଲି ଆସୁଥାଏ । ଏହି ବାସନ ମଜା ଯନ୍ତ୍ରର କାରସାଦି ଦେଖିଲେ ଘଣ୍ଟାଏ ଠିଆହୋଇ ଦେଖିବାକୁ ମନ ହେବ ।

## ରୋଷେଇକର ଯନ୍ତ୍ର ବା ଅଟୋମେଟିକ୍ ହାଣ୍ଡିଶାଳ

ଅଟୋମେଟିକ୍ ହାଣ୍ଡିଶାଳ ଆମେରିକା ବୈଜ୍ଞାନିକମାନଙ୍କର ଏକ ସାର୍ଥକ 'ସୃଷ୍ଟି' । ଏହା ସେ ଦେଶର ରନ୍ଧାପ୍ରଣାଳୀକୁ ଯେମିତି ସୁଖମୟ କରୁଛି, ସେକଥା ପୂର୍ବରୁ କହି ସାରିଛି । ଏହି ଅଟୋ-ମେଟିକ୍ ହାଣ୍ଡିଶାଳ ହେତୁ ଆମେରିକାନ୍ ସ୍ତ୍ରୀ ଲୋକମାନେ ଖୁବ୍ କମ୍ ସମୟ ହାଣ୍ଡିଶାଳରେ କଟାନ୍ତି । ଆମଦେଶ ଭଳି ସକାଳୁ ରାତି ପର୍ଯ୍ୟନ୍ତ ହାଣ୍ଡିଶାଳରେ ପଡ଼ିବା ଦରକାର ନାହିଁ । ଭାତ, ତରକାରି ଆଦି ଚୂଲିରେ ବସାଇ ଦେଇ ବଜାର ବୁଲି ଚାଲିଗଲେ, କି ଡ୍ରଇଂ ରୁମରେ ବସି ଗୀତ ଶୁଣିଲ କି ଟେଲିଭିଜନ ଦେଖିଲ, ସ୍ୱାମୀ

କାମରୁ କି ଅଫିସରୁ ଆସିଲା ବେଳକୁ ରନ୍ଧାବଢ଼ା ହୋଇ ଠିକ୍ ହୋଇ ରହିଛି । ସ୍ତ୍ରୀ ଲୋକମାନେ ଗଲେ ଖାଇବା ଟେବୁଲ ଉପରେ ବାଡ଼ି ସ୍ୱାମୀ, ଝିଅପିଲାଙ୍କୁ ଖାଇବାକୁ ଦେଲେ ।

ଏହି ଅଟୋମେଟିକ୍ ରନ୍ଧା ଯନ୍ତ୍ର ସହିତ ଲାଗିଥିବା ଓଭନ ସାହାଯ୍ୟରେ ସେ ଦେଶର ସ୍ତ୍ରୀଲୋକେ କେକ୍, ବିସ୍କୁଟ ବା ଗଜା, ଆଦି କରନ୍ତି । ବେଳେବେଳେ ସେମାନେ ପାଉଁରୋଟି ମଧ୍ୟ ଘରେ କରି ପାରନ୍ତି ।

## ଅଟୋମେଟିକ୍ ଭାତରନ୍ଧା ଯନ୍ତ୍ର

ଏ ଏକ ଅଦ୍ଭୁତ ଯନ୍ତ୍ର । ଆମ ଦେଶ ପାଇଁ ଭାରି ସୁବିଧା । ଏଇ ଯନ୍ତ୍ରରେ ଗୋଟିଏ ହାଣ୍ଡିଥାଏ । ଏହା ବିଦ୍ୟୁତ୍ ଶକ୍ତିଦ୍ୱାରା ଚାଳିତ । ଏହି ହାଣ୍ଡିରେ ଚାଉଳ, ପାଣିଦେଇ ଯନ୍ତ୍ରକୁ ଚଳାଇ ଦେଲେ ଭାତ ମନକୁ ମନ ହୋଇଯିବ । ଭାତ ହୋଇଗଲେ ଯନ୍ତ୍ରଟି ମନକୁମନ ବନ୍ଦ ହୋଇଯିବ । ଏହି ଯନ୍ତ୍ରରେ ସୁବିଧା ହେଉଛି, ଭାତ ବସାଇ ଦେଇ ବୁଲି ବାହାରି ଗଲ, ଆସିଲା ବେଳକୁ ଭାତ ରନ୍ଧାହୋଇ ଥୁଆ ହୋଇଛି । ଭାତ ପୋଡ଼ିଯିବା ଭୟ ନାହିଁ ।

## ଅଟୋମେଟିକ୍ ଟୋଷ୍ଟ କରି ଯନ୍ତ୍ର

ଏ ଭଳି ଏକ ମଜା ଯନ୍ତ୍ର । ଏଥିରେ ଖଣ୍ଡ ଖଣ୍ଡ ପାଉଁ ରୋଟିକୁ ଲାଲ ଲାଲ୍ କରି ଭାଜିବା ସମ୍ଭବପର । ଏହି ଯନ୍ତ୍ରରେ ପାଉଁରୁଟି ସ୍ଲାଇସ ଥୋଇଦେଇ ଯନ୍ତ୍ରକୁ ଚଳାଇଦେଲେ କିଛି ସମୟପରେ ପାଉଁରୁଟି ଭାଜହୋଇ ବାହାରି ଆସେ, ମନକୁ ମନ ଯନ୍ତ୍ର ବନ୍ଦ ହୋଇଯାଏ ପୋଡ଼ିଯିବାର ମୋଟେ ଭୟ ନଥାଏ । ଏହିଯନ୍ତ୍ରରେ ଆଉ ବି ସୁବିଧା, ଯାର ଯେତିକି କଡ଼ା ଭଜା ଦରକାର ସେତିକି କଡ଼ା କରି ଭାଜି ହେବ ।

## ମସଲା ଚୂନା କରା ଯନ୍ତ୍ର

ମାର୍କିନ ପରିବାରରେ ସେମାନଙ୍କର ବଡ଼ ମସଲା ହେଲା ମରିଚଗୁଣ୍ଡ । ଏହା ବଜାରରେ ଗୁଣ୍ଡ ଆକାରରେ ମିଳେ । କିନ୍ତୁ ବହୁ ଲୋକେ ଗୁଣ୍ଡକୁ ଆଦର ନକରି ଗୋଟା ଗୋଟା ମରିଚ କିଣିଆଣନ୍ତି । ଏହି ମରିଚକୁ ଗୋଟାଏ ପ୍ରକାର ଯନ୍ତ୍ରରେ ପୂରାଇ ଖାଇବା ଟେବୁଲ ଉପରେ ରଖିଥାନ୍ତି । କୌଣସିଥିରେ ଯଦି ମରିଚଗୁଣ୍ଡ ଛୁଞ୍ଚିବା ଦରକାର ପଡ଼େ, ତେବେ ଏହି ଯନ୍ତ୍ରକୁ ସେହି ଖାଦ୍ୟ ଉପରେ ଦେଖାଇ ବୁଲାଇଲାକ୍ଷଣି ଗୋଟା ମରିଚରୁ ମରିଚ ଗୁଣ୍ଡ ହୋଇ ଝଡ଼ି ପଡ଼େ ଏହି । ମରିଚଗୁଣ୍ଡ ତଟକା ଚୂର ହୋଇଥିବାରୁ ଏହାର ବାସନା ଅଧିକ, ତେଣୁ ଆମେରିକାନ୍ ଘରେ ଭାରି ପ୍ରିୟ । ଆମେ ଏମିତି କେତୋଟି ଯନ୍ତ୍ର ସାଙ୍ଗରେ ନ ଆଣି ରହି ପାରିଲୁ ନା । ତାଛଡ଼ା ବାକି ଅନ୍ୟ ସମସ୍ତ ମସଲା ଯଥା—ଡାଲଚିନି ଗୁଣ୍ଡ, ଲବଙ୍ଗଗୁଣ୍ଡ, ଲଙ୍କାଗୁଣ୍ଡ, ହଳଦୀ ଗୁଣ୍ଡ ଆଦି ବଜାରରେ ମିଳେ । ଖୁବ୍ କମ୍ ଲୋକ ତ ସେଭଳି ମସଲା ଖାନ୍ତି । ଯେଉଁମାନେ ଖାଆନ୍ତି, ବଜାରରୁ ଗୁଣ୍ଡ ମସଲା କିଣିଆଣି ଖାଆନ୍ତି ।

## ମସଲା ବାଟିବା ଯନ୍ତ୍ର

ମାର୍କିନ ପରିବାରରେ ମସଲା ବାଟିବାଯନ୍ତ୍ର ଭଳି ସେମିତି କିଛି ଗୋଟାଏ ଯନ୍ତ୍ର ନାହିଁ । ସେମାନଙ୍କ ଦେଶରେ ଗୋଟିଏ ଚମତ୍କାର ଯନ୍ତ୍ର ମିଳେ । ତାକୁ କହନ୍ତି ବ୍ଲେଣ୍ଡର । ଏହି ଯନ୍ତ୍ରରେ ବଟାବଟି କାମ ବେଶ୍ ଭଲ ଭାବରେ କରି ହେବ । ଏହିଯନ୍ତ୍ର ଭିତରେ ଗୁରେଟି ଛୁରୀ ଅତି ଜୋରରେ ଘୋଟିଏ ଗିଲାସ ଭଳି ଯନ୍ତ୍ର ଭିତରେ ବିଦ୍ୟୁତ୍ ସାହାଯ୍ୟରେ ଘୂରେ । ସେହି ଗିଲାସ ଭିତରେ ଲଙ୍କା, ଧଣିଆ, ପୋସ୍ତ, ଜିରା ଆଦି ଯେଉଁ ମସଲା ପକାଇ

ଯନ୍ତ୍ରଟିକୁ ଚଳାଇ ଦେବ, ଏହା ଆଖିପିଛୁଳାକେ ସେଗୁଡ଼ିକୁ ବାଟି ପିଠଉ ଭଳି କରି ଥୋଇଦେବ । ଆମେ ଯେତେବେଳେ ସେ ଦେଶରେ ଏମିତ ଗୋଟାଏ ଯନ୍ତ୍ର ଦେଖିଲୁଁ, ସେଥିରେ ମସଲା ବାଟିବାର କୌଶଳ ଆମ ମନକୁ ଜୁଟିଗଲା । ବଟା ମସଲା ଗୁଣ୍ଡ ମସଲା ଅପେକ୍ଷା ସୁଆଦ ହେଉଥିବାରୁ ଆମ ଦେଶରୁ ମସଲା ମଗାଇ ନେଇ ଏହି ଯନ୍ତ୍ର ସାହାଯ୍ୟରେ ବାଟି ତରକାରିରେ ପକାଉ-ଥିଲୁଁ । ତାଛଡ଼ା ଆମେ ଏହି ଯନ୍ତ୍ରରେ ବିରିଡାଲି ବରି ବାଟି ଚକୁଳି ପିଠା, ଇଡ଼ୁଲି, ଦୋସି ଆଦି କରୁଥିଲୁଁ । ଖାଲି ଆମେ ନୋହୁଁ ବହୁ ଘରଣୀପ୍ପ ବିଶେଷତଃ ମାନ୍ଦ୍ରାସୀମାନେ ଏହି ଯନ୍ତ୍ର ସାହାଯ୍ୟରେ ବାଟି ସେମାନଙ୍କ ପିଠାପଣା, ଚଟଣୀ ଆଦି କରନ୍ତି । ବିରିଡାଲି କ ବରି ବାଟିବା ଆଖି ପିଛୁଳାକେ କରିହେବ । ହୁଏ ତ ଅନେକେ ନ ଦେଖିଲେ ବିଶ୍ୱାସ ଯିବେ ନି । ଆମେ ଏହି ଯନ୍ତ୍ର ସାହାଯ୍ୟରେ ବରି ବାଟି ଆମେରିକାରେ ବଡ଼ି କରି ଖାଉଥିଲୁଁ । ଏହି ଯନ୍ତ୍ରର ଏମିତ କାମ ଦେଖି ଏଥିରୁ ଗୋଟାଏ ସାଙ୍ଗରେ ନ ଆଣି ରହି ପାରିଲୁ ନି ।

## ପରିବା କାଟିବା ଯନ୍ତ୍ର

ସେ ଦେଶରେ ସାଧାରଣ ପରିବା କାଟିବା ପାଇଁ ପନିକିର ବ୍ୟବହାର ନାହିଁ । ସମସ୍ତେ ଛୁରିରେ ପରିବା କାଟନ୍ତି । ପତଳା ପତଳା ଆଳୁ, ପିଆଜ, ବାଇଗଣ, କଖାରୁ କାଟିବାପାଇଁ ଆମ ଦେଶ ଭଳି କେତେ ପ୍ରକାର ଯନ୍ତ୍ର ସେ ଦେଶରେ ମିଳେ । ସେ ସବୁ ଛାଡ଼ି ଆଳୁ ବାଇଗଣ, କଖାରୁକୁ ସାଧାରଣ ଭାବରେ କାଟିବାପାଇଁ ଆଉ ଏକ ପ୍ରକାର ଯନ୍ତ୍ର ମିଳେ । ଏଥିରେ ଆଳୁ, ବାଇଗଣ ଥୋଇ ଚିପିଦେଲା କ୍ଷଣି ଏହା ବିଭିନ୍ନ ଆକାରରେ

ଏକା ଥରକେ କାଟି ଖଣ୍ଡ ଖଣ୍ଡ ହୋଇଯାଏ । ଆମେ ଯେମିତି ପନିପରିବା କାଟୁ, ଠିକ୍ ସେମିତି । ଥର ଥର କରି ଛୁରୀରେ କାଟିବା ଦରକାର ନାହିଁ । ଟାଙ୍କଡ଼ା ବିଭିନ୍ନ ଡିଜାଇନ୍‌ରେ ପରିବା କାଟିବା ପାଇଁ ବିଭିନ୍ନ ଯନ୍ତ୍ର ମଧ୍ୟ ଅଛି ।

## ଦାନ୍ତ ଘଷିବା ଯନ୍ତ୍ର

ଆମେରିକାର ଲୋକମାନେ ଆମ୍ଭମାନଙ୍କ ଭଳି ଭଲ ଭାବରେ ଦାନ୍ତ ଘଷନ୍ତି ନି । ସେଇଟା ହେଉଛି ସେମାନଙ୍କର ସବୁଠାରୁ ଅପରିଷ୍କାର କାମ । ସକାଳୁ ଉଠିବେ । ମୁହଁ ହାତ ଧୋଇ ଫଳ ରସ ଗିଲାସେ ଗିଲାସେ ପିଇ ଦେବେ । ଦାନ୍ତଘଷା ନାଁ ଧରିବେ ନି । ସେଥିପାଇଁ ସେମାନଙ୍କର ଦାନ୍ତ ରୋଗ ବେଶୀ । ଝିଅ ଗୁଡ଼ାକ ଦେଖିବାକୁ ବେଶ୍ ସୁନ୍ଦର, ଉଜ୍ଜ୍ୱଳ ଡାଉଳ, କିନ୍ତୁ ସେମାନଙ୍କ ଦାନ୍ତକୁ ଅନାଇଲେ ବାନ୍ତି ମାଡ଼ିବ । ସେମାନଙ୍କ ପାଖରେ କଥା କହିଲେ ସେମାନଙ୍କ ମୁହଁ ଗନ୍ଧାଏ । ପାଟି ଗନ୍ଧାଇବାକୁ ଦୂର କରିବା ପାଇଁ ସେମାନେ ସବୁଦା ଚୁଇଙ୍ଗଗମ୍ ଆଦି ଚୋବାଉ ଥାନ୍ତି । ଦିନରେ ତିନି ଚାରିଥର ନାନା ପ୍ରକାର ଔଷଧ କୁଳି କରନ୍ତି ଆମର ସାମାଜିକ ପ୍ରଥାରେ ଦାନ୍ତ ଘଷାଟା ଯେମିତି ଗୋଟିଏ ନିୟମ, ସେମିତି ନିୟମ ସେମାନଙ୍କର ନାହିଁ । ଆମର ଯେମିତି ପିଲାମାନେ ଦାନ୍ତ ନ ଘଷିଲେ ମା'ମାନେ ଖାଇବାକୁ ଦେବେନି, ସେମିତି ସ୍ନେହ, ମମତା ସେମାନଙ୍କର ନାହିଁ । ତେଣୁ ଦାନ୍ତ ଘଷାଟା ଅଭ୍ୟାସରେ ପଡ଼ିନି । ସପ୍ତାହରେ ଥରେ ଅଧେ ଯଦି ମନ ହେଲା ଦାନ୍ତ ଘଷା ବ୍ରସ୍, ପେଷ୍ଟ ନେଇ ଦାନ୍ତ ଘଷି ପକାଇବେ । ଦାନ୍ତ ଘଷିବେ ସତ, ଜିଭ ଛେଲିବେ ନାହିଁ। ଜିଭ ଛେଲା କଣ ସେମାନେ ଜାଣନ୍ତିନି । ଆମ

ଜିଭ ଛେଲିବା ଦେଖିଲେ ସେମାନେ ଆଶ୍ଚର୍ଯ୍ୟ ହୁଅନ୍ତି । ଜିଭ ଛେଲିବାର କାରଣ ପଚାରନ୍ତି ।

ଆଜିକାଲି ଆମେରିକାନ୍ ପରିବାରରେ ସାଧାରଣ ବ୍ରସ୍ ପରିବର୍ତ୍ତରେ ଦାନ୍ତ ଘଷିବା ଯନ୍ତ୍ର ବ୍ୟବହୃତ ହେଉଛି । ସପ୍ତାହର ଯାହା ଥରେ ଦିଥର ଦାନ୍ତ ଘଷୁଛନ୍ତି, ସେ ଦାନ୍ତ ଘଷା ବ୍ରସ୍ ସାହାଯ୍ୟରେ ନ କରି ଏହି ଯନ୍ତ୍ର ସାହାଯ୍ୟରେ କରୁଛନ୍ତି । ଏହି ଯନ୍ତ୍ର ପୁଣି କେତେ ପ୍ରକାରର ଅଛି । କିଏ ଟର୍ଚ୍ଚଲାଇଟ ବେଟେରୀ ସାହାଯ୍ୟରେ ଚାଲୁଛି ତ କିଏ ଘରର ଇଲେକ୍‌ଟ୍ରିକ କରେଣ୍ଟ-ସାହାଯ୍ୟରେ ଚାଲୁଛି । ଏହି ଯନ୍ତ୍ରରେ ଗୋଟିଏ ଅତି ସୂକ୍ଷ୍ମ ବ୍ରସ୍ ଥାଏ । ଯନ୍ତ୍ର ଚଳାଇଲେ ଏହି ବ୍ରସ୍‌ଟି ଅତି ବେଗରେ କମ୍ପିତ ହୁଏ । ଏହି କମ୍ପିତ ବ୍ରସ୍‌କୁ ଦାନ୍ତ ପାଖରେ ଦେଖାଇଲେ ଏହା ଦାନ୍ତ ସନ୍ଧିର ସବୁ ମଇଳା ଅଂଶତକ କାଢ଼ି ବାହାର କରିଦିଏ । ଏହା ସହିତ କିଛି ପେଷ୍ଟ ଲଗାଇଲେ ଆହୁରି ଭଲ । ସାମାନ୍ୟ କେଇ ମିନିଟ୍ ଭିତରେ ଦାନ୍ତ ସଫା ହୋଇ ଚକ୍ ଚକ୍ ହୋଇଯାଏ । ଅନେକ ଆମେରିକାନ୍‌ଙ୍କ ଘରେ ଏହି ଦାନ୍ତଘଷା ଯନ୍ତ୍ର ଚାଲେ । ମିତ୍ରଙ୍କ ଘରରେ ଦୁଇଥର ପୁଣି ଏ ଯନ୍ତ୍ର ସାହାଯ୍ୟରେ । ଦେଖିବ ସେମାନଙ୍କ ଦାନ୍ତ ଖୁବ ପରିଷ୍କାର । ଆମର ସେମିତି ଦାନ୍ତଘଷା ଯନ୍ତ୍ର ଆଣିବାକୁ ଇଚ୍ଛା ଥିଲା । କିନ୍ତୁ ସେ ଯନ୍ତ୍ରର ବ୍ରସ୍ ଆମ ଦେଶରେ ମିଳିବ ନା ବୋଲି ସେମିତି ଗୋଟିଏ ଯନ୍ତ୍ର ଆଣିବାରୁ କ୍ଷାନ୍ତ ହେଲୁ ।

## କ୍ଷୌର ହେବା ଯନ୍ତ୍ର

ଆମେରିକାନ୍‌ମାନେ ପ୍ରତିଦିନ ଘରେ କ୍ଷୌର ହୁଅନ୍ତି । କେତେକ ବ୍ୟବହାର କରନ୍ତି, 'ସେଫ୍‌ଟିରେଜର, ଆଉ କେତେକ ବ୍ୟବହାର କରନ୍ତି କ୍ଷୌର ହେବା ଯନ୍ତ୍ର । କ୍ଷୌର ହେବା ଯନ୍ତ୍ର

ଦେଖିବାକୁ ଭାରି ମଜା ଲାଗେ । ମୁହଁରେ ଦାଢ଼ି, ନିଶ ଖିଅର ହେବା ପାଇଁ ଏହି ଯନ୍ତ୍ରକୁ ଦେଖାଇଲା କ୍ଷଣି ନିଶ ଦାଢ଼ି ମନକୁ ମନ ସଫା ହୋଇଯାଏ । ଏହି ଯନ୍ତ୍ର ଏତେ ସୁନ୍ଦର କାଟେ ଯେ ଏହା ଆଗରେ ଯେତେ ସୁନ୍ଦର କ୍ଷୁର ହେଲେ ବି ଠିଆ ହୋଇ ପାରିବନି । ପୁଣି ଏ କ୍ଷୁର ବ୍ୟବହାର କଲେ ପାଣି କି ସାବୁନ ଲଗାଇବା ଦରକାର ନାହିଁ । ଏହି ଯନ୍ତ୍ର ଯୋଗୁଁ ଦୈନିକ ଖିଅର ହେବା କାମ ସହଜ ହୋଇଯାଏ । ଆମେରିକାର ସ୍ତ୍ରୀ ଲୋକମାନେ ସେମାନଙ୍କ ଗୋଡ଼ ବାଳ, ହାତ ବାଳକୁ ମଧ୍ୟ ଏହି କ୍ଷୁର ସାହାଯ୍ୟରେ ଖିଅର ହୋଇ ପଡ଼ନ୍ତି ।

## ବାଳକଟା ଯନ୍ତ୍ର

ଖିଅର ହେବା ଯନ୍ତ୍ର ଭଳି ବାଳ କଟା ଯନ୍ତ୍ର ଆଉ ଏକ ମଜା ଯନ୍ତ୍ର । ଏହା ଦେଖିବାକୁ ଭାରି ମଜା ଲାଗେ । ଏହି ଯନ୍ତ୍ର ମଧ୍ୟ ବିଦ୍ୟୁତ୍‌ଶକ୍ତି ସାହାଯ୍ୟରେ ଚାଲେ । ଏହାକୁ ମୁଣ୍ଡରେ ଦେଖାଇଲା କ୍ଷଣି ଏହା ବାଳକୁ କାଟି ପକାଏ । ଆମେରିକାର ସେଲୁନ୍ ମାନଙ୍କରେ ଏହି ଯନ୍ତ୍ରର ବ୍ୟବହାର ବେଶି । ଆମେରିକାର ସେଲୁନ୍ ମାନଙ୍କରେ ବାଳ କାଟିବାକୁ ଜଣ ପିଛା ପନ୍ଦର ଟଙ୍କା ପଡ଼ୁଥିବାରୁ ଆମେରିକାର ଢେର ଲୋକ ଘରେ ଘରେ ବାଳ କାଟନ୍ତି । ମୁଣ୍ଡ ବାଳ କାଟିବା ବହୁ ସ୍ତ୍ରୀ ଲୋକେ ଶିଖିଛନ୍ତି । ତେଣୁ ଏହି ସ୍ତ୍ରୀ ଲୋକ ମାନେ ସେମାନଙ୍କ ସ୍ୱାମୀ, ପୁଅଙ୍କର ବାଳ ଘରେ ଘରେ କାଟି ଦିଅନ୍ତି । ଖାଲି ସେତିକି ନୁହେଁ ସ୍ୱାମୀର କି ପୁଅର ସାଙ୍ଗ ସାଥିଙ୍କର ବାଳମଧ୍ୟ କାଟି ଦିଅନ୍ତି । ଫଳରେ ସେମାନଙ୍କୁ ଆଉ ସେଲୁନକୁ ଯାଇ ଖର୍ଚ୍ଚାନ୍ତ ହେବାକୁ ପଡ଼େନି । ଏମିତିକି ବାଳ କାଟି ପାରିବା ଗୁଣ ଝିଅମାନଙ୍କର ଏକ ଲୋଭନୀୟ ଗୁଣ । ପୁରୁଷ ବନ୍ଧୁମାନେ ଏ ଗୁଣକୁ

ଘର ମରାମତି କରନ୍ତି । ବାଳ କାଟିବା ବାରିକମାନଙ୍କର କାମ, ଏ ଧାରଣା ସେ ଦେଶରେ ନାହିଁ । ଆମ ଦେଶ ଭଳି ବାରିକ ଜାତିର ଲୋକ ସେ ଦେଶରେ ନାହାଁନ୍ତି ।

## ଜୋତା ପାଲିସ୍ କରା ଯନ୍ତ୍ର

ଆମେରିକାନ୍ ଲୋକେ ନିଜ ହାତରେ ଜୋତା ପାଲିସ କରନ୍ତି । କାରଣ ବାହାରେ ଜୋତା ଥରେ ପାଲିସ୍ କଲେ ପ୍ରାୟ ଦୁଇ ଟଙ୍କା ଲାଗିବ । ତେଣୁ ପ୍ରତିଦିନ ଅଫିସ ଗଲା ବେଳେ ସେମାନେ ଜୋତା ରଙ୍ଗ ଓ ବ୍ରସ୍ ନେଇ ଜୋତା ପାଲିସ କରନ୍ତି । ବେଳେ ବେଳେ ସ୍ୱାମୀ କାର୍ଯ୍ୟ ବ୍ୟସ୍ତ ଥିଲେ ସ୍ତ୍ରୀମାନେ କରିଦିଅନ୍ତି । ବ୍ରସ୍ ସାହାଯ୍ୟରେ ଜୋତାକୁ ପାଲିସ ନ କରି ଏକ ପ୍ରକାର ଯନ୍ତ୍ର ସେ ଦେଶରେ ବ୍ୟବହୃତ ହେଉଛି, ଯେଉଁ ଯନ୍ତ୍ରକୁ ଜୋତା ଉପରେ ଦେଖାଇଲା କ୍ଷଣି ଏହା ଜୋତାକୁ ଚକ୍ ଚକ୍ କରି ପାଲିସ କରି ପକାଏ । ଏହି ଯନ୍ତ୍ର ବ୍ୟବହାର କଲେ ପରିଶ୍ରମ ଖୁବ୍ କମ୍ ପଡ଼େ । ଏହି ଯନ୍ତ୍ର ମଧ୍ୟ ବିଦ୍ୟୁତ୍ ଶକ୍ତି ସାହାଯ୍ୟରେ ଚାଲେ । ସେ ଦେଶର ସ୍ତ୍ରୀ ଲୋକମାନେ ବିନା ପରିଶ୍ରମରେ ସ୍ୱାମୀ, ପୁଅ, ଝିଅଙ୍କର ଜୋତା ପାଲିସ୍ କରି ନିମିଷକ ମଧ୍ୟରେ ଥୋଇ ଦିଅନ୍ତି । ଏହି ଜୋତା ପାଲିସ କରା ଯନ୍ତ୍ରର ଦାମ୍ ସେମିତି କିଛି ବେଶି ନୁହେଁ । ଯିଏ ଇଚ୍ଛା କରିବ, ସେ କିଣି ପାରିବ ।

## ଡବା କାଟିବା ଯନ୍ତ୍ର

ଆମେରିକାନ୍ ପରିବାରରେ ରାନ୍ଧିକରି ଖାଇବାଠାରୁ ରନ୍ଧା ଜିନିଷ ଡବାରେ ପ୍ୟାକ୍ ହୋଇ ବିକ୍ରି ହେଉଥିବା ଡବାରୁ ଆଣି କାଟି ସେଥିରୁ ଖାଦ୍ୟ ବାହାର କରି ଖାଇବା କମ୍ ଲୋକପ୍ରିୟ ନୁହେଁ । ସୁପ୍‌ଠାରୁ ଆରମ୍ଭ କରି ନାନାପ୍ରକାର ତରକାରି ପର୍ଯ୍ୟନ୍ତ

ସବୁ କିଛି ରନ୍ଧା ହୋଇ ଟିଣରେ ବନ୍ଦ ହୋଇ ବିକ୍ରି ହେଉଥାଏ । ଆମେରିକାନ୍ ସ୍ତ୍ରୀ ଲୋକମାନେ ସେଗୁଡ଼ିକୁ କିଣି ଆଣି କାଟି ସେଥିରୁ ସୁପ୍, ତରକାରୀ ଆଦି ବାହାର କରି ପରିବାରବର୍ଗଙ୍କୁ ଖାଇବାକୁ ଦିଅନ୍ତି । ଗୋଟିଏ ଗୋଟିଏ ପରିବାରରେ ଏହି ଟିଣ ଖାଦ୍ୟର ପ୍ରଚଳନ ଏତେ ବେଶି ଯେ ସେମାନଙ୍କ ଘରେ ପ୍ରତିଦିନ କୁଡ଼ କୁଡ଼ ଖାଲି ଟିଣ ଜମା ହୋଇଯାଏ । ଆମ ଦେଶ ଲୋକ ଏହି ଡବାଗୁଡ଼ିକୁ ଯଦି ହାତରେ କାଟୁଥାନ୍ତେ, ତେବେ ସେ ଦେଶର ସ୍ତ୍ରୀ ଲୋକମାନଙ୍କର କଷ୍ଟର ସୀମା ରହନ୍ତା ନାହିଁ । ଏହି ଟିଣ ବା ଡବା କାଟିବା ପାଇଁ ସେମାନେ ନିଜ ନିଜ ଘରେ କେତେ ପ୍ରକାର ଯନ୍ତ୍ର ବସାଇଛନ୍ତି । ଏହି ଯନ୍ତ୍ର ଦେହରେ ଏହି ଅକଟା ଟିଣ ବା ଡବାକୁ ପୂରାଇ ଯନ୍ତ୍ର ଚଳାଇଦେଲେ, ନିମିଷକ ମଧ୍ୟରେ ଏହା ଡବାକୁ କାଟି ଥୋଇ ଦେବ । ଏ ପୁଣି ଏପରି ସୁନ୍ଦର କଟା ଯେ କେଉଁଠି ଟିକିଏ ଧାର ବାହାରି ନଥିବ । ଧାର ଯଦି ଟିକିଏ ବାହାରି ଥିବ ଓ ଏହି ଧାରରେ ମାର୍କିନ ମହିଳା ଜଣଙ୍କର ହାତ କଟିଯାଏ, ତେବେ ସେ କୋମ୍ପାନୀର ଆଉ ଜିନିଷ ବିକ୍ରି ହେବ ନାହିଁ । ତେଣୁ ଯନ୍ତ୍ର ତିଆରି କୋମ୍ପାନୀମାନେ ଖୁବ୍ ସାବଧାନତା ସହକାରେ ଏ ଯନ୍ତ୍ର ତିଆରି କରିଥାନ୍ତି । ଯେମିତି ଏଥିରେ ଟିଣ ଖୁବ୍ ଭଲଭାବରେ କଟିଯାଏ, କେଉଁଠି ଧାର ଆଦି କିଛି ବାହାରେ ନାହିଁ ।

## ଛୁରୀ ଧାର କରା ଯନ୍ତ୍ର

କେକ୍, ପାଉଁରୁଟି କଟାଠାରୁ ଆରମ୍ଭ କରି ପନିପରିବା, ଫଳମୂଳ, ମାଛ, ମାଂସ କାଟିବା ପର୍ଯ୍ୟନ୍ତ ସବୁଥିରେ ଛୁରୀର ଆବଶ୍ୟକତା ମାର୍କିନ୍ ଘରେ ବେଶି । ଆମ ଦେଶରେ ପନିକିର ବ୍ୟବହାର ଯାହା, ତାହାଠାରୁ ସେମାନଙ୍କ ଦେଶରେ ଛୁରୀର

ଆବଶ୍ୟକତା ଅତି ବେଶି । ଛୁରୀ ପୁଣି ବିଭିନ୍ନ ପ୍ରକାରର ଅଛି । ଛୋଟ, ବଡ଼, ମୁନିଆଁ, ମୋଟା, ସରୁ । ପୁଣି କେତେକର ଧାର କରତ ଧାର ଭଳି କଟା କଟା । ପାଉଁରୁଟି ଆଦି କାଟିବା ପାଇଁ ଏହି ଧରଣର ଛୁରୀର ଆବଶ୍ୟକତା ଅତି ବେଶି । ଆମ ଦେଶଭଳି ପନିକି ସେମାନଙ୍କ ଦେଶରେ ନାହିଁ । ଆମ ଦେଶରେ ପନିକିର ଧାର ଯଦି ମରିଯାଏ, ତେବେ ଆମକୁ ନେବାକୁ ପଡ଼େ କମାରଶାଳକୁ ପକାଇବା ପାଇଁ । କିନ୍ତୁ ସେମାନଙ୍କ ଦେଶରେ ତା' ନୁହେଁ । ଛୁରୀ ଧାର ମରିଗଲା କି ଲେଉଟିଗଲା, ସେମାନେ ସଙ୍ଗେ ସଙ୍ଗେ ପୁଣି ଧାର କରି ପକାଇବେ ନିଜ ଘରେ ଥିବା ଛୁରୀ ଧାରକସ ଯନ୍ତ୍ର ସାହାଯ୍ୟରେ । ଏହି ଯନ୍ତ୍ର ଅନେକ ସ୍ଥଳରେ ଡବା କଟା ଯନ୍ତ୍ର ସହିତ ଲାଗି କରିଥାଏ । ଏଥିରେ ଗୋଟିଏ ଶାଣ ପଥର ଥାଏ । ଏହି ଶାଣ ପଥରଟି ବିଦ୍ୟୁତ୍ ଶକ୍ତି ଦ୍ୱାରା ଖୁବ୍ ବେଗରେ ଘୂରେ । ଏହି ଘୂରୁଥିବା ଶାଣ ପାଖରେ ଛୁରୀ, କଇଁଚି ଆଦି ଦେଖାଇଲେ ଆଖି ପିଛୁଳାକେ ଧାର ହୋଇଯାଏ । ଦନ୍ତୁଡ଼ା ଛୁରୀ କି କଇଁଚି ଧରି ସେମାନଙ୍କୁ ଏ ଦୁଆରକୁ ତା ଦୁଆରକୁ ଯିବାକୁ ପଡ଼େ ନି ।

## ଅଣ୍ଡା ଫେଣ୍ଟିବା ଯନ୍ତ୍ର

କୁକୁଡ଼ା ଅଣ୍ଡାରୁ ଆମ୍ଲେଟ୍ କରି ଖାଇବା ଆମେରିକା ଲୋକଙ୍କର ଅତି ପ୍ରିୟ । ଆମ୍ଲେଟ୍ କରିବା ପାଇଁ ଅଣ୍ଡାକୁ ଭଲ ଭାବରେ ଫେଣ୍ଟିବା ଦରକାର । ଭଲ ଫେଣ୍ଟା ନ ହେଲେ ଆମ୍ଲେଟ୍ ଭଲ ହୁଏ ନି । ଅଣ୍ଡାକୁ ହାତରେ ଫେଣ୍ଟିବା ଏକ ଝଗ୍ଦାର କାମ । ପୁଣି ଯଦି ଗୁଡ଼ାଏ ଆମ୍ଲେଟ୍ କରିବା ଦରକାର ପଡ଼ିଲା, ତେବେ କଲବାଲର ଅବସ୍ଥା ଶୋଚନୀୟ । ଏହି ଆୟାସ ସାଧ୍ୟ କାମକୁ ସହଜରେ କରିବା ପାଇଁ ସେମାନଙ୍କ ଦେଶରେ ଅଣ୍ଡା ଫେଣ୍ଟିବା ଯନ୍ତ୍ରର ପ୍ରଚଳନ ବେଶି । ଏଥିରେ ଅଣ୍ଡାକୁ ଭାଙ୍ଗି ତା' କୁସୁମ

ବାହାର କରି ଯନ୍ତ୍ରର ଗିଲାସ ଭଳି ଏକ ଅଂଶରେ ପକାଇ ଦେଲି । ସେହି ଗିଲାସ ଭିତରେ ଦୁଇଟି ଚାରି ଛଣା ବା ପାଞ୍ଚଛଣା ଯନ୍ତ୍ର ଘୂରୁଥାଏ। ଏହା ଏତେ ଜୋରରେ ଘୂରେ ଯେ ସଙ୍ଗେ ସଙ୍ଗେ ଅଣ୍ଡାକୁ ଫେଣ୍ଟି ଥୋଇଦିଏ । ଏ ଯନ୍ତ୍ରର ଆବଶ୍ୟକତା ଖାଲି ଅଣ୍ଡା ଫେଣ୍ଟିବା ପାଇଁ ନୁହେଁ । ଏହା ସାହାଯ୍ୟରେ ଅଣ୍ଡା, ମଇଦା, ଚିନି, ଦୁଧ, ଘିଅ ଆଦିକୁ ଭଲ ଭାବରେ ମିଶାଇ ସେଥିରୁ କେକ୍, ବିସ୍କୁଟ, ଡୁନଟ୍ (Dough nut) ଆଦି ସେ ଦେଶର ନାନା ପ୍ରକାର ମିଠାଇ ବା ମିଠା ଜିନିଷ ତିଆରି କରି ହୁଏ । ଏହି ଗୋଳାଇବା ଯନ୍ତ୍ର ନ ଥିଲେ ଉପରୋକ୍ତ ଜିନିଷ ସବୁ ତିଆରି କରିବାରେ ଭାରି କଷ୍ଟ ହୁଅନ୍ତା । ତା' ଛଡ଼ା, ତୁମ ଘରକୁ ମନେକର ଅତିଥି ଆସିଲେ, ସେମାନଙ୍କୁ ସରବତ୍ ଆଦି ଦେବ । ତେବେ ସେହି ସରବତ୍ ଫେଣ୍ଟା କାମ ପାଇଁ ଏହି ଯନ୍ତ୍ର ଭାରି ଉପଯୋଗୀ । ସରବତ୍ ଫେଣ୍ଟିବା ପାଇଁ ଏଥିରେ ଆଉ ଏକ ପ୍ରକାର ଯନ୍ତ୍ର ଲାଗିଥାଏ । ସେହି ଯନ୍ତ୍ର ସାହାଯ୍ୟରେ ଭଲ ସରବତ୍ ଫେଣ୍ଟି ହୁଏ । ଆମେ ସେମିତି ଗୋଟିଏ ଯନ୍ତ୍ର ଖରିଦ୍ ନ କରି ରହି ପାରିଲୁ ନି । ଏବେ ବି ଆମ କଟକ ଘରେ ସେହି ଯନ୍ତ୍ର ଚାଲୁଛି ।

## ରସ ନିଗାଡ଼ିବା ଯନ୍ତ୍ର

କମଳା, ବାତାପୀ, ଅଙ୍ଗୁର, ସେଓ ଗାଜର ଆଦିରୁ ରସ ବାହାର କରିବାକୁ ମନେକର ଦରକାର ପଡ଼ିଲା । ଆମେ କରୁ କଣ ? ତାକୁ ହାତରେ ଧରି ଚିପୁଡ଼ୁ । କୌଣସି ଖାଇବା ଜିନିଷରେ ହାତ ଲଗାଇବା ଭାରି ଖରାପ୍ କଥା । ଏମିତିକି ନିଜ ଖାଇବା ଜିନିଷରେ ନିଜ ହାତ ଲଗାଇବା ଭଲ ନୁହେଁ । ଏହି ଧାରଣାରୁ ହିଁ ସେମାନଙ୍କ ଦେଶରେ କେହି ହାତରେ ଖାଆନ୍ତି ନି । ଛୁରୀ, କଣ୍ଟା, ଚାମୁଚ ସାହାଯ୍ୟରେ ସମସ୍ତେ ଖାଆନ୍ତି । ଶୁଖିଲା ଜିନିଷ, ଯେଉଁଥିରେ ହାତ

ବିଶେଷ ଲାଗେନି, ସେମିତି ଜିନିଷକୁ ହାତରେ ଖିଆ ଯାଇପାରେ । କିନ୍ତୁ ଯେଉଁଥିରେ ହାତ ବେଶି ଲାଗିବ, ସେମିତି ଜିନିଷକୁ ହାତରେ ଧରି ଅନ୍ୟ କାହାକୁ ଖାଇବାକୁ ଦେଲେ ସେମାନେ ଘୋର ଘୃଣା କରନ୍ତି । ତେଣୁ ସେଭଳି ପରିସ୍ଥିତିରେ ଉପରୋକ୍ତ ଫଳଗୁଡ଼ିକୁ ହାତରେ ଚିପୁଡ଼ି ରସ କାଢ଼ିଲେ ଘୃଣା ନ କରିବ କିଏ ? ରସ ନିଗାଡ଼ିବା ପାଇଁ ସେମାନଙ୍କ ଦେଶରେ ଏକ ପ୍ରକାର ଯନ୍ତ୍ର ଅଛି । ଏହି ଯନ୍ତ୍ର ଭିତରେ ଫଳକୁ ପୂରାଇ ଯନ୍ତ୍ରଟିକୁ ଚଳାଇଲେ ରସ ମନକୁମନ ବାହାରି ଆସେ । ଫଳ ସିଠା ଆଉ ଏକ ଜାଗାରେ ବାହାରିଯାଏ । ଆମେରିକା ପରିବାରରେ ଏହି ଯନ୍ତ୍ରର ପ୍ରଚଳନ ଖୁବ୍ ବେଶି ।

## ମୁଣ୍ଡ ବାଳ ଶୁଖାଇବା ଯନ୍ତ୍ର

ଆମ ଦେଶରେ ସ୍ତ୍ରୀଲୋକମାନେ ବେଳେବେଳେ ମୁଣ୍ଡ ଧୁଅନ୍ତି । ମୁଣ୍ଡରେ ସାବୁନ୍ ଲଗାଇ ମୁଣ୍ଡବାଳକୁ ସଫା କରନ୍ତି । ସଫା କରିସାରି ବାଳକୁ ଶୁଖାଇବା ଏକ କଷ୍ଟକର କଥା । ଏଥି-ପାଇଁ ଆମ ଦେଶର ସ୍ତ୍ରୀ ଲୋକେ ମୁଣ୍ଡବାଳକୁ ଦେଖାଇ ଖରାରେ ବସନ୍ତି । ଯଦି ବର୍ଷା ଦିନ ହୋଇଥାଏ, ତେବେ ମୁଣ୍ଡବାଳ ଶୁଖି ନ ପାରି ଦୁର୍ଗନ୍ଧିଆ ଗନ୍ଧାଏ । ମୁଣ୍ଡଟା ଭାରି ଭାରି ଲାଗେ । ଏହି ଅସୁବିଧାରୁ ରକ୍ଷା ପାଇବା ପାଇଁ ସେମିତି କିଛି ସୁବିଧା ଆମ ଦେଶରେ ନାହିଁ । କିନ୍ତୁ ସେ ଦେଶରେ ଅବସ୍ଥା ପୁରାପୁରି ଅଲଗା । ସେ ଦେଶରେ ମାଇପେ ମୁଣ୍ଡ ଧୋଇଲେ ଖରାରେ ବସି ମୁଣ୍ଡ ଶୁଖାନ୍ତି ନାହିଁ । ବର୍ଷର ଛ ମାସ ତ ବରଫ ପଡ଼େ । ସେଥିରେ ମୁଣ୍ଡ ଶୁଖିବ ବା କେମିତି ? ତେଣୁ ସେ ପରିସ୍ଥିତିରେ ସେମାନଙ୍କୁ ବ୍ୟବହାର କରିବାକୁ ପଡ଼େ, ଏକ ପ୍ରକାର ମୁଣ୍ଡ ବାଳ ଶୁଖାଇବା ଯନ୍ତ୍ର । ମୁଣ୍ଡ ବାଳ ପରିଷ୍କାର କରି ସାରି ସେହି ମୁଣ୍ଡରେ ଗୋଟିଏ ପ୍ରକାର

ଟୋପି ଲଗାନ୍ତି । ସେହି ଟୋପିଟି ଏକ ପ୍ରକାର ଯନ୍ତ୍ର ସହିତ ଲାଗିଥାଏ । ଯନ୍ତ୍ରଟି ବିଦ୍ୟୁତ୍ ଶକ୍ତି ସାହାଯ୍ୟରେ ଚାଲେ । ଏହି ଯନ୍ତ୍ରରୁ ଉଷୁମ୍ ବାୟୁ ବାହାରି ବାଳ ଭିତରେ ପଶିଅଳ୍ପ ସମୟ ଭିତରେ ବାଳକୁ ଶୁଖାଇଦିଏ । ଆମେରିକା ସ୍ତ୍ରୀ ଲୋକମାନେ ଆମ ଦେଶର ସ୍ତ୍ରୀ ଲୋକମାନଙ୍କ ଭଳି ବେଣି ଲମ୍ବା ଲମ୍ବା ବାଳ ରଖନ୍ତି ନାହିଁ । ତେଣୁ ସେମାନଙ୍କ ବାଳ ଅଳ୍ପ ସମୟ ମଧ୍ୟରେ ଶୁଖିଯାଏ । କିନ୍ତୁ ସେଠି ଥିଲା ବେଳେ ମୋ ଅବସ୍ଥା ଥିଲା ଖରାପ୍ । ମୋ ମୁଣ୍ଡରେ ତ ଗୁଡ଼ାଏ ବାଳ । ତେଣୁ ବାଳ ଧୋଇଲେ ଶୁଖାଇବା ବଡ଼ ସମସ୍ୟା । ଶୀତ ଦିନେ ତ ଦେହ, ହାତ, ମୁଣ୍ଡ ସବୁ ଘୋଡ଼ାଇ ବାହାରକୁ ବାହାରିବାକୁ ପଡ଼େ । ତେଣୁ ସେ ପରିସ୍ଥିତିରେ ମୋ ମୁଣ୍ଡର ଏତେ ଗୁଡ଼ାଏ ବାଳ ଶୁଖିବ ବା କେମିତି । ତେଣୁ ଆମେ ସେଠାରେ ପହଞ୍ଚି ଏଭଳି ଗୋଟିଏ ବାଳ ଶୁଖାଇବା ଯନ୍ତ୍ର କିଣିନେଲୁ । ଏହି ଯନ୍ତ୍ରରେ ବାଳ ଶୁଖାଇବାକୁ ଖୁବ ଭଲ ଲାଗେ । ଯେଉଁ ଯନ୍ତ୍ରଟିକୁ ଆମେ ସେଠି ବ୍ୟବହାର କରିଥିଲୁ, ଫେରି ଆସିଲାବେଳେ ସଙ୍ଗରେ ନେଇ ଆସିଲୁ । ଶୀତ ଦିନେ, କି ବର୍ଷାଦିନେ ମୁଁ ଆଉ ମୋ ପିଲାଏ ଏହି ଯନ୍ତ୍ରରେ ଆଜିକାଲି ବାଳ ଶୁଖାଉଛୁ । ବର୍ଷା ଦିନେ ଆଉ ଆମ ବାଳ ଉଷୁମୁଳିଆ ଗନ୍ଧାଉ ନାହିଁ ।

## ସିଲେଇକରା ଯନ୍ତ୍ର

ଆମେରିକା'ନ ପରିବାରରେ ଏଇଟା ଗୋଟିଏ ଅତି ଦରକାରୀ ଜିନିଷ । ଲୁଗା ଟିକିଏ କେଉଁଠି ଚିରିଗଲା, ସିଲାଇ କରିବା ଦରକାର, ସଙ୍ଗେ ସଙ୍ଗେ ଏହି ସିଲେଇକରା ଯନ୍ତ୍ରରେ ସିଲାଇ କରିପକାଇବେ । ଦରଜିର ଆବଶ୍ୟକତା ପଡ଼େ ନାହିଁ । ସେ ଦେଶରେ ଆମ ଦେଶଭଳି ଦରଜି ମିଳନ୍ତି ନାହିଁ । ମିଳିଲେ ବି

ସେମାନଙ୍କ ସ୍ଵର୍ଗ ଖୁବ୍ ବେଶି । ଟିକିଏ କେଉଁଠି ସିଲେଇ କରିବେ ତ ବଣଟଙ୍କା ଉଡ଼ିନେବେ । ତେଣୁ ସେ ଦେଶର ମାଇପେ ନିଜ ଘରେ ଗୋଟାଏ ଗୋଟାଏ ସିଲେଇକଳ ରଖିଥାନ୍ତି । ସେଥିରେ ବେଳେବେଳେ ସେମାନଙ୍କର ପିଲାପିଲିମାନଙ୍କର ପୋଷାକପତ୍ର କରନ୍ତି । ସେ ଦେଶରେ ଗୋଡ଼ଚଳା କି ହାତଚଳା ସିଲେଇକଳ ପାଇବନି । ସବୁଗୁଡ଼ିକ ବିଦ୍ୟୁତ୍‌ଶକ୍ତି ଚାଳିତ । ଗୋଡ଼ କି ହାତର ପରିଶ୍ରମ ଦରକାର ନାହିଁ । ଦିନସାରା ବସି ସିଲେଇ କରୁଥିଲେ ବି କଷ୍ଟ ଟିକିଏ ବି ଧିବ ନାହିଁ । ଏ ଯନ୍ତ୍ର ଆମ ଦେଶର ସିଲେଇକଳଠାରୁ ଢେର ସୁବିଧା ।

## ବୋତାମ ଘରକରା କଳ

ସେ ଦେଶରେ ଏମିତି ବୋତାମଘରକରା ଯନ୍ତ୍ର ଅଛି, ଯାହାକୁ ଏଣୁ ସିଲେଇକଳ ସହିତ ଲଗାଇଦେଲେ ପୋଷାକର ବୋତାମ-ଘର ମନକୁ ମନ କରି ପକାଇବ । ଯେଉଁ ଆକାରର ବୋତାମଘର ଚାହିଁବ, ସେ ଆକାରର ହୋଇପାରିବ । ପୋଷାକ ତିଆରି କରି ସାରି ବୋତାମଘର କରିବା ଯେଉଁ କଷ୍ଟ କାମ, ସେ କଷ୍ଟ ଆଉ ଏ ଯନ୍ତ୍ରରେ ନାହିଁ । ଇଚ୍ଛାକଲେ, ଅ.ଖି ପିଚୁଳାକେ ମନକୁ ମନ ବୋତାମଘର ହୋଇଗଲା ।

## ପୋଷାକ ଉପରେ ଫୁଲପକା କଳ

ପୋଷାକରେ କେତେ ଫୁଲ ପକାଇବା ଦରକାର । ଆମ ଦେଶରେ ମାଇପେ କ'ଣ କରନ୍ତେ, ଛୁଞ୍ଚିସୂତା ଧରି ବସିଯିବେ, ଫୁଲ ପକାଇବେ । ପୁଣି ସେ ଆଉ ଏକ କଷ୍ଟ କାମ । ଫୁଲ ପକାଇ ପକାଇ ହାତ ଦେହ ଯନ୍ତ୍ରଣା ହୋଇଯାଏ । କିନ୍ତୁ ସେଠି ତ

ସେ କଷ୍ଟ ନାହିଁ । ସେହି ଯନ୍ତ୍ରରେ ଆଉ ଏକ ଯନ୍ତ୍ର ଲାଗିଛି, ତାକୁ ଚଳାଇଦେଲେ ଯେଉଁ ସୁନ୍ଦର ଫୁଲ ସୃଷ୍ଟି ହେବ, ସେ ମନକୁ ମନ ଆଖି ପିଛୁଳାକେ ପକାଇଦେବ । ମୁଁ ଯେତେବେଳେ ଆମେରିକାରେ ଯାଇ ପହଞ୍ଚିଲି, ଆମେ ସେଭଳି ଯନ୍ତ୍ରଟାଏ କିଣିବାପାଇଁ ଓକିଲ ମହାଶୟଙ୍କ ଏହିତ ଲଗାଇଲି । ଫଳରେ ଆମେରିକା ପହଞ୍ଚିବାର ଦୁଇମାସ ଭିତରେ ସେଭଳି ଏକ ଯନ୍ତ୍ର କିଣାଗଲା । ଏବେ ବି ସେହି ଯନ୍ତ୍ର ଆମ ଘରେ ବର୍ତ୍ତମାନ ଖୁଲିଛି । କି ସୁବିଧା ସେ ଯନ୍ତ୍ର ? ପୋଷାକପତ୍ର ସିଲାଇ କରିବା ବ୍ୟତୀତ ଏହା ବୋତାମଘର କରି ପାରୁଛି, ନାନା ରକମର ଫୁଲ ପକାଇ ପାରୁଛି । ସେଥିପାଇଁ ମୋତେ ଟିକିଏ ବି ସୂଚୀ ପରିଶ୍ରମ କରିବାକୁ ପଡ଼ୁନି ।

## ପିଲାଙ୍କ ସିଲେଇ କଳ

ଖାଲି ସେତିକି ନୁହେଁ, ପିଲମାନଙ୍କ ପାଇଁ ମଧ୍ୟ ଛୋଟ ଛୋଟ ନାନାପ୍ରକାର ସିଲେଇକଳ ମିଳୁଛି । ଏମିତି କି ପ୍ରସିଦ୍ଧ ସିଙ୍ଗର କୋମ୍ପାନୀ ଦ୍ୱାରା ତିଆରି ହୋଇ । ସେମାନେସେମାନଙ୍କ କଣ୍ଢେଇ ଆଦିରପୋଷାକ ନିଜେ ନିଜେ ତିଆରି କରିବାପାଇଁ । ଆମେରିକାରେ ଥିଲାବେଳେ ଝିଅ ଟୁନୁପାଇଁ ସେମିତି ଏକ ସିଙ୍ଗର କୋମ୍ପାନୀ ତିଆରି ସିଲେଇ କଳ କିଣା ଯାଇଥିଲା । ଏବେ ବି ସେହି ସିଲେଇଯନ୍ତ୍ର ଏଠି କାମ କରୁଛି । ସେହି ସିଲେଇଯନ୍ତ୍ରରେ ସିଲେଇ କରିବାକୁ ପିଲମାନଙ୍କୁ ଖୁବ ଭଲ ଲାଗେ । ଆମେ ଏହିସବୁ କଳରୁ ଗୋଟିଏ ଗୋଟିଏ ନ ଆଣି ରହି ପାରିଲୁ ନି ।

## ହିସାବ କରିବା ଯନ୍ତ୍ର

ଘରର ଯାବତୀୟ ଖର୍ଚ୍ଚର ହିସାବ ରଖନ୍ତି ସେ ଦେଶର ସ୍ତ୍ରୀ ଲୋକମାନେ । ମନେକର ଗୋଟିଏ ଦିନରେ କୋଡ଼ିଏ ତରହ ପ୍ରକାର ଜିନିଷ କିଣାଗଲା, କେତେ ଲୋକଙ୍କୁ ପଇସା ଦିଆଗଲା ।

ସେଗୁଡ଼ାକର ମୋଟ ହିସାବ ରଖିବାକୁ ହେଲେ ସବୁଗୁଡ଼ିକୁ ତ ମିଶାଇବା ଦରକାର । ମିଶାଇବା ତ ଏକ କଷ୍ଟକର କଥା ଅନେକଙ୍କ ପାଇଁ । ପୁଣି ଭୁଲ ହେବା ସମ୍ଭାବନା । ତେଣୁ ଅଧିକାଂଶଙ୍କ ଘରେ ଯନ୍ତ୍ର ଅଛି, ସେହି ଯନ୍ତ୍ର ସାହାଯ୍ୟରେ ଆଖି ପିଛୁଳାକେ ଏହି ଟଙ୍କା ପଇସା ହିସାବ କରିହେବ । ଭୁଲ୍ ହେବାର ସମ୍ଭାବନା ବି ନାହିଁ । ଯନ୍ତ୍ରଗୁଡ଼ିକ ବି ଖୁବ୍ ସାଧାରଣ ଆକାରରେ ଏମିତି କି ପକେଟରେ ପୂରାଇ ନେଇଆଣି ହେବ । ସେମିତି ଯନ୍ତ୍ରରେ ହିସାବ କରିବାକୁ ଖୁସି ଲାଗେ । ଆମେ ଆସିଲାବେଳେ ଏମିତି ଗୋଟିଏ ଯନ୍ତ୍ର ସଙ୍ଗରେ ନେଇଆସିଲୁ । ମିଶାଣ ଫେଡ଼ାଣ କରିବାକୁ ଭାରି ସୁବିଧା, ଆଖି ପିଛୁଳାକେ ହୋଇଯାଉଛି ।

## ପେନ୍‌ସିଲ୍ କାଟିବା ଯନ୍ତ୍ର

ଏ ଯନ୍ତ୍ର କେତେ ପ୍ରକାର ଅଛି । କେତେକ ଇଲେକ୍‌ଟ୍ରିକ୍ ଦ୍ୱାରା ଚଳେ ତ କେତେକ ଖାଲି ହାତରେ ଚଳେ । ଏ କଳରେ ପେନ୍‌ସିଲ୍ ପୂରାଇ କଳକୁ ଚଳାଇଦେଲେ ପେନ୍‌ସିଲ୍ ଆଖି ପିଛୁଳାକେ କଟାହୋଇ ମୁନିଆଁ ହୋଇଯାଏ । ଯେତେ ଝରଣ ପେନ୍‌ସିଲ୍ ହେଲେ ବି ମୁନ ମୋଟେ ଭାଙ୍ଗେ ନାହିଁ । ଏଥିରେ ପେନ୍‌ସିଲ୍‌କୁ ବୁଲାଇ ବୁଲାଇ ଆମ ଦେଶର ବ୍ଲେଡ଼ କଳଭଳି କଟା ଯାଏ ନାହିଁ । ପେନ୍‌ସିଲ୍ ସ୍ଥିର ରହିବ, କଳ ଘୂରିବ । ପେନ୍‌ସିଲ୍ କାଟିବାପାଇଁ ଏଥିରେ କ୍ଷୁରଭଳି ଧାରୁଆ ଯନ୍ତ୍ର ନ ଥାଏ । ଏହାର କାଟିବା ପ୍ରଣାଳୀ ଅନ୍ୟ ଧରଣର । ଏମିତି ଏକ ସୁବିଧା ଯନ୍ତ୍ରକୁ ଦେଖିଲେ ନ କିଣିବ ବା କିଏ ?

## ଔଜନନେବା ଯନ୍ତ୍ର

ଆମେରିକାନ୍ ପରିବାରରେ ଏହି ଯନ୍ତ୍ରଟିର ପ୍ରଚଳନ ଖୁବ୍ ବେଶି । ଏହି ଯନ୍ତ୍ରଟି ସାଧାରଣତଃ ସେମାନଙ୍କ ଗାଧୁଆଘରେ

ଥାଏ । ଘରର ଯାବତୀୟ ମେମ୍ବର କି ପିଲା, କି ଯୁବକ, କି ବୁଢ଼ା, କି ଯୁବତୀ, କି ବୁଢ଼ୀ ସମସ୍ତେ ପ୍ରତି ସପ୍ତାହରେ ଥରେ ଲେଖାଏଁ ନିଜ ନିଜ ଶରୀରର ଓଜନ ନିଅନ୍ତି । ଆମ ଦେଶରେ ଯେମିତି କାହାର ଓଜନ କମିଗଲେ ଚିନ୍ତା, ସେ ଦେଶରେ ଓଜନ ବଢ଼ିଗଲେ ଅତି ଚିନ୍ତା । ବିଶେଷତଃ ସ୍ତ୍ରୀ ଲୋକମାନଙ୍କର ଯଦି ଓଜନ ବଢ଼ିଗଲା, ତେବେ ସବୁ ଗଲା । ସେମାନେ ଧାଇଁଲେ ଡାକ୍ତର ପାଖକୁ, କାରଣ କ'ଣ ଜାଣିବାପାଇଁ । ଡାକ୍ତରର ପଥି ଅନୁସାରେ ଖାଦ୍ୟ ଖାଇବା କମାଇ କିମ୍ବା ଚର୍ବି ବା ତେଲଜାତୀୟ ଖାଦ୍ୟଠାରୁ ଦୂରରେ ରହି ଚଳିବେ, ଓଜନ ପୁଣି କମିବା ପର୍ଯ୍ୟନ୍ତ । ପିଲାର ବୟସ ଅନୁସାରେ ଓ ଉଚ୍ଚତା ଅନୁସାରେ ଓଜନ ଯଦି ଠିକ୍ ଅଛି ଭଲ, ଯଦି ବଢ଼ିଗଲା ତେବେ ଚିନ୍ତା । ପୁଣି ଡାକ୍ତରଙ୍କ ସହିତ ପରାମର୍ଶ । ତେଣୁ ଯେଉଁ ଯନ୍ତ୍ରର ଆବଶ୍ୟକତା ଏତେ ସେ ଦେଶରେ ଏ ଯନ୍ତ୍ର ନ ହେଲେ ଲୋକେ ଚଳିବେ କେମିତି ? ସେମାନଙ୍କ ଦେଶର ଆଦବ୍ କାଏଦା ରଖିବାକୁ ଯାଇ ଆମେ ମଧ୍ୟ ଏମିତି ଗୋଟାଏ ଯନ୍ତ୍ର କିଣିଥିଲୁଁ ଓ ଆସିଲା-ବେଳେ ସଙ୍ଗରେ ଘେନି ଆସିଲୁଁ ।

## ତାପ ଓ ଉତ୍ତାପ କହିବା ଯନ୍ତ୍ର

ଖରାଦିନେ ଉତ୍ତାପ କେତେବେଶୀ ହେଲା, ଶୀତଦିନେ ଉତ୍ତାପ କେତେ କମି ଆସିଲା, ଆମେରିକାନ୍‌ମାନେ ଜାଣିବାକୁ ଭାରି ଆଗ୍ରହୀ । ଶୀତଦିନେ ଘର ଭିତରର ଉତ୍ତାପ ତ ନିୟନ୍ତ୍ରିତ ହୁଏ, ବାହାରର ଥଣ୍ଡା କେତେ ଜାଣିବା ସେମାନଙ୍କର ଦରକାର । ସେଥିପାଇଁ ସେମାନେ ନାନା ପ୍ରକାର ଯନ୍ତ୍ର ବ୍ୟବହାର କରନ୍ତି । ଏହି ଯନ୍ତ୍ର ଖାଲି ସେମାନଙ୍କୁ ବତାଇ ଦିଏନା ଘର ବାହାରର ଉତ୍ତାପ

କେତେ, ସେଥି ସହିତ ବଢାଇବାଏ ବାୟୁର ଆର୍ଦ୍ରତା କେତେ, ଓ ବର୍ଷା ବା ବରଫଝଡ଼ ହେବାର ଆଶଙ୍କା ଅଛି କି ନାହିଁ। ଘର ଭିତରର ସାଧାରଣ ଉତ୍ତାପରେ ରହି ବାହାର ଥଣ୍ଡା କେତେ ମାପି ଏହି ଯନ୍ତ୍ର କହିଦିଏ ବାହାରେ କେତେ ଥଣ୍ଡା ଅଛି । ଆମେ ଆସିଲାବେଳେ ସେମିତି ଗୋଟାଏ ଯନ୍ତ୍ର ନ ଆଣି ରହିପାରିଲୁ ନି ।

## କାଳ କରତ ଓ କାଳ ରନ୍ଧା

ଏସବୁ ଯନ୍ତ୍ରକୁ ଛାଡ଼ି ଆମେରିକାନ୍ ପରିବାରରେ କଳ କରତ, କଳ ରନ୍ଧା ଆଦି ବହୁପ୍ରକାର ଆସବାବ୍ ପତ୍ର ତିଆରି ଯନ୍ତ୍ରପାତି ଥାଏ । କାରଣ ଯଦି ସେମାନଙ୍କର ଆସବାବ ପତ୍ର ଖରାପ ହୋଇଗଲା କି ଭାଙ୍ଗିଗଲା, ତେବେ ସେମାନେ ନିଜେ ନିଜେ ମରାମତି କରିଦେବେ । କାରଣ ତା ନ କରି ବଢ଼େଇ ପାଖକୁ ନେଲେ ବା ବଢ଼େଇଟାଏ ଡାକିଲେ ସେ ସାମାନ୍ୟ ଛୋଟ କାମଟିଏ ପାଇଁ ବହୁତ ଗୁଡ଼ାଏ ପଇସା ନେବ । ତେଣୁ ସେହି ଭୟରେ ସେମାନେ ସେମାନଙ୍କ ଘରର ଯାବତୀୟ ମରାମତି ନିଜେ କରନ୍ତି । ସେଥିପାଇଁ ସବୁ ହାତ ହତିଆର ସେମାନଙ୍କର ଥାଏ । କାଠକୁ କରତରେ କାଟିବା ଏକ କଷ୍ଟ କାମ । ତେଣୁ ସେମାନେ ଇଲେକ୍‌ଟ୍ରିକ୍ ଚାଳିତ କଳକରତ ରଖିଥାନ୍ତି, ସେହି ଯନ୍ତ୍ରକୁ ଦେଖାଇଦେଲେ କାଠ କାଟି ହଜାଇବ । କଷ୍ଟ କରିବା ଦରକାର ନାହିଁ । ସେମିତି କାଠକୁ ପାଲିସ କରିବା ଦରକାର, ବିଦ୍ୟୁତ୍ ଚାଳିତ ରନ୍ଧା ଚଳାଇଲେ ଆଖି ପିଛୁଳାକେ ପାଲିସ୍ ହୋଇଗଲା । ରନ୍ଧା ଧାର ମରିଗଲେ, ଧାର କରିବା ଦରକାର ନାହିଁ । ସେଥିରେ ବ୍ଲେଡ଼ଭଳି ଯନ୍ତ୍ରଟିଏ ଲାଗିଥାଏ, ତାକୁ କାଢ଼ି ପକାଇ ଆଉ ଏକ ନୂଆ ବ୍ଲେଡ଼ ଲଗାଇଦେଲେ; ଏହା ପୁଣି ପାଲିସ କଲା । ଧାର କରିବା କଷ୍ଟ ନାହିଁ ।

ଏସବୁ ଘରକରଣା ଯନ୍ତ୍ର ସହିତ ବାଡ଼ ବଗିଚାରେ କାମ ପାଇଁ ଭଲ ଲଙ୍ଗଳଠାରୁ ଆରମ୍ଭ କରି ଗ୍ରେଟ ଗ୍ରେଟ ବିଦ୍ୟୁତ୍‌ଚାଳିତ ଟ୍ରାକ୍‌ଟର, ଘାସ କାଟିବା ଯନ୍ତ୍ର, ଗଛର ପତ୍ର କାଟିବା ଯନ୍ତ୍ର କେତେ ଅଛି । ସେ ସମ୍ପର୍କରେ ସେମାନଙ୍କ ବାଡ଼ ବଗିଚା ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି ।



# ଡିପାର୍ଟମେଣ୍ଟାଲ ଷ୍ଟୋର୍‌ସ

ଆମେରିକାରେ ସୁପର ମାର୍କେଟ ଯେମିତି ଅତି ଲୋକପ୍ରିୟ, ସେଇପରି ଲୋକପ୍ରିୟ ହେଲା ଡିପାର୍ଟମେଣ୍ଟାଲ ଷ୍ଟୋରସ୍ । ପୂର୍ବ ଅଧ୍ୟାୟରେ ଯେଉଁସବୁ ଜିନିଷପତ୍ର କଥା କୁହାଗଲା, ସେସବୁ ମିଳେ, ଏହି ଷ୍ଟୋରମାନଙ୍କରେ । ସୁପରମାର୍କେଟର ସର୍ବପ୍ରଥମ ସୃଷ୍ଟି ଯେମିତି ଆମେରିକାରେ, ଡିପାର୍ଟମେଣ୍ଟାଲ ଷ୍ଟୋର୍‌ସର ସର୍ବପ୍ରଥମ ସୃଷ୍ଟି ଆମେରିକାରେ ନୁହେଁ । ବରଂ ଡିପାର୍ଟମେଣ୍ଟାଲ ଷ୍ଟୋରସ୍‌ର ସର୍ବପ୍ରଥମ ସୃଷ୍ଟି ଇଉରୋପରେ, ଏହା ଅଧିକ ପ୍ରସାର ଲାଭ କରିଛି ଆମେରିକାରେ । ଆମେରିକାରେ ଡିପାର୍ଟମେଣ୍ଟାଲ ଷ୍ଟୋରସ ଯେମିତି ପ୍ରସାରିତ, ଇଉରୋପର କୌଣସି ଦେଶରେ ସେଇପରି ପ୍ରସାରିତ ବୋଲି ମୋର ମନେ ହୁଏ ନାହିଁ । ଆମେରିକାରେ ଗ୍ରେଟ ବଡ଼ ସହରଠାରୁ ଆରମ୍ଭ କରି ସୁଦୂର ପଲ୍ଲୀଅଞ୍ଚଳରେ ମଧ୍ୟ ଗ୍ରେଟ ବଡ଼ ଡିପାର୍ଟମେଣ୍ଟାଲ ଷ୍ଟୋରମାନ ଦେଖିବାକୁ ମିଳେ । ଆମର ଇଉରୋପ ଭ୍ରମଣବେଳେ ଲଣ୍ଡନ, କେମ୍ବ୍ରିଜ୍, ପାରିସ, ମିଉନିକ୍, ଜେନିଭା । ରୋମ୍ ଆଦି ଇଉରୋପର ଖୁବ୍ ବଡ଼ ବଡ଼ ସହର ଦେଖିଛୁଁ, କିନ୍ତୁ ଆମେରିକା ଭଳି ସୁବ୍ୟବସ୍ଥିତ ଡିପାର୍ଟମେଣ୍ଟାଲ ଷ୍ଟୋର କେଉଁଠି ଦେଖିନୁ । ଆମେରିକାରେ ଏହି ଡିପାର୍ଟମେଣ୍ଟାଲ ଷ୍ଟୋରଗୁଡ଼ିକର ବିଶେଷତା ଏତେ ଯେ ସେ ଦେଶରେ ଗୋଟିଏ ଗୋଟିଏ ଡିପାର୍ଟମେଣ୍ଟାଲ

ଷ୍ଟୋର ସହିତ ଇଂଲଣ୍ଡ କି ଫ୍ରାନ୍ସର ପୁଞ୍ଜାଏ ପୁଞ୍ଜାଏ ଡିପାର୍ଟମେଣ୍ଟାଲ ଷ୍ଟୋର ସମାନ ହେବନି । ପୃଥିବୀର ବୃହତ୍ତମ ଡିପାର୍ଟମେଣ୍ଟାଲ ଷ୍ଟୋର 'ମାସେ' ନିଉୟର୍କ ନଗରୀରେ ଅବସ୍ଥିତ । ଏହି ଡିପାର୍ଟମେଣ୍ଟାଲ ଷ୍ଟୋରଟି ଏତେ ବିରାଟ ଯେ ଏହାକୁ ନ ଦେଖିଲେ ସହଜେ ଧାରଣା କରି ହେବନି । ଏହି ବିରାଟ ଷ୍ଟୋରଟି ବିଂଶାଧିକ ତାଲା ବିଶିଷ୍ଟ ଏକ ପ୍ରକାଣ୍ଡ ପ୍ରାସାଦରେ ଅବସ୍ଥିତ । ଆମେ ଭାରତ ଫେରିବା ବାଟରେ ନିଉଜେରସିରେ ଆମ ମାର୍କିନ୍ ବନ୍ଧୁଙ୍କ ଘରେ ଯେଉଁ ପାଞ୍ଚ ଦିନ ରହିଥିଲୁ, ସେଥିରେ ଆମର ନିଉୟର୍କ ନଗରୀ ବୁଲିବା ଥିଲା ପ୍ରଧାନ କାମ । ଆମେ ସେଥି ଭିତରେ ଏହି 'ମାସେ' ଡିପାର୍ଟମେଣ୍ଟାଲ ଷ୍ଟୋରଟିକୁ ବୁଲି ଦେଖିଥିଲୁ । କି ବିରାଟ ଷ୍ଟୋର । ପୃଥିବୀର ଉଚ୍ଚତମ ପ୍ରାସାଦ ଏମ୍ପାୟାର ଷ୍ଟେଟ୍ ବିଲଡ଼ିଂ ଯେଉଁ ଷ୍ଟ୍ରୀଟ୍ ଉପରେ ଅବସ୍ଥିତ, ଏହି ବୃହତ୍ତମ ଷ୍ଟୋରଟି ସେହି ଷ୍ଟ୍ରୀଟ୍ ଉପରେ ଅବସ୍ଥିତ । ଉଭୟ ପରସ୍ପରର ଖୁବ୍ ନିକଟବର୍ତ୍ତୀ । ଗୋଟିକଠାରେ ଠିଆ ହେଲେ ଅନ୍ୟଟି ବେଶ୍ ଦିଶେ । ମାସେ ଡିପାର୍ଟମେଣ୍ଟାଲ ଷ୍ଟୋରକୁ ଯିବାର ଉଦ୍ଦେଶ୍ୟ ହେଉଛି, ଏହାକୁ ଦେଖିବା ଓ ଏଥିରୁ ଜିନିଷ କେତୋଟି କିଣିବା । ଅମେ ଷ୍ଟୋର ଭିତରକୁ ପଶିଗଲୁ ସତ; ଏହାର ବିରାଟତା ଦେଖି ଆମେ ହତ୍‌ବତ୍ଵେଇ ଗଲୁ । ଗୋଟିଏ ଗୋଟିଏ ଜିନିଷ ପାଇଁ ପ୍ରକାଣ୍ଡ ପ୍ରକାଣ୍ଡ ସୋ' ରୁମ୍ । ଆମର ଗୋଟିଏ ସୁଟ୍‌କେଶ କିଣିବାର ଥାଏ । ଆମକୁ ସେଲ୍ସ ଗାର୍ଲମାନେ ଗୋଟାଏ ସୋ ରୁମକୁ ନେଇଗଲେ । ସେହି ବିରାଟ ହଲରେ କେବଳ ବିଭିନ୍ନ ଜାତିର ବିଭିନ୍ନ କିସମ ବିଭିନ୍ନ ମୂଲ୍ୟର, ବିଭିନ୍ନ କମ୍ପାନୀର ସୁଟକେଶ ହିଁ ରହିଛି । ହଲର ଏ ମୁଣ୍ଡରୁ ସେ ମୁଣ୍ଡିକୁ ଖାଲି ସୁଟକେଶଗୁଡ଼ିକୁ ଅନାଇ ଅନାଇ ବୁଲିଗଲେ ଘଣ୍ଟାକରୁ

ଅଧିକ ସମୟ ଲାଗିବ । ବାଛି କିଣିବାକୁ ହେଲେ କେତେ ସମୟ ଲାଗିବ ଅନୁମାନ କରିବା କଥା । ସେହିଭଳି ପିଲାଙ୍କ ଖେଳନା ସୋ' ରୁମ । ତାହା ପୁଣି ଗୋଟିଏ ତଲରେ ନାହିଁ, ଏକାଧିକ ତଲରେ ରହିଛି । ତାଛଡ଼ା ରନ୍ଧା ସରଞ୍ଜାମ ପାଇଁ ଏକାଧିକ ତଲ୍ ପୋଷାକପତ୍ର ପାଇଁ ପୁଣି କେତୋଟି ସୋରୁମ । ସାମାନ୍ୟ କେଇଗୋଟି ସୋରୁମ୍ ଦେଖିଲା ପରେ ଆମର ଧୈର୍ଯ୍ୟ ରହିଲା ନାହିଁ । କେତେ ବା ଦେଖିବୁଁ ? ସବୁ ସୋରୁମଟିକ ଦେଖି ସାରିଲା ବେଳକୁ ଏକାଧିକ ଦିନ ଲାଗିଯିବ । ଏଇ ହେଲା ପୃଥିବୀର ବୃହତ୍ତମ ଷ୍ଟୋରର କାହାଣୀ । କଥାରେ ଯା କହନ୍ତି ସୂଚୀଠାରୁ ରେଳଗାଡ଼ି ପର୍ଯ୍ୟନ୍ତ ସବୁ ଜିନିଷ ଗୋଟାଏ ଗୋଟାଏ ଷ୍ଟୋରରେ ମିଳିବ ।

ତାଛଡ଼ା ଆମେରିକାରେ ବିଭିନ୍ନ ପ୍ରକାର କମ୍ପାନୀ ଅଛନ୍ତି, ଯେଉଁମାନଙ୍କର ଶହ ଶହ ଡିପାର୍ଟମେଣ୍ଟାଲ୍ ଷ୍ଟୋର । ଆମେରିକାର ବିଭିନ୍ନ ସହରରେ ଖୋଲାଇ ହୋଇରହିଛି । ସେମିତି ବଡ଼ ବଡ଼ କମ୍ପାନୀ ଭିତରୁ ସିଅ୍ରସ୍ ରୋବାକ୍ ଗୋଟାଏ । ଏହି କମ୍ପାନୀର ପ୍ରାୟ ଶହ ଶହ ଡିପାର୍ଟମେଣ୍ଟାଲ ଷ୍ଟୋର ସାରା ଯୁକ୍ତ-ରାଷ୍ଟ୍ରରେ ଖୋଲାଇ ହୋଇଅଛି । ଏହାର ଗୋଟିଏ ଗୋଟିଏ ଷ୍ଟୋର ଏତେ ବିରାଟ ଯେ ଆମ ଦେଶର ଶତାଧିକ ଷ୍ଟୋର ଏହାର ଗୋଟିଏ ସହିତ ବି ସମାନ ହେବ ନି । ସେମିତି ଆଉ ଏକ କୋମ୍ପାନୀ ହେଉଛି ଉଲ୍‌ଓ୍ୱାର୍ଥ । ଏହାର ସହସ୍ରାଧିକ ଷ୍ଟୋର ଯୁକ୍ତରାଷ୍ଟ୍ର ଆମେରିକା ଗ୍ରେଟ୍ ବ୍ରିଟେନ୍ ଓ ଇଉରୋପର କେତେକ ରାଷ୍ଟ୍ରରେ ଅଛି । ଆମର ଲଣ୍ଡନ ପରିକ୍ରମା ଭିତରେ ଏହି କୋମ୍ପାନୀର ଏକ ଷ୍ଟୋର ଆମେ ଲଣ୍ଡନ ସହରରେ ଦେଖିଥିଲୁ ।

ଡ଼ିପାର୍ଟମେଣ୍ଟାଲ ଷ୍ଟୋର ଏମିତି ଏକ ଦୋକାନ, ଯେଉଁଠାକୁ ଗଲେ ଜୀବନର ସବୁ ଆବଶ୍ୟକୀୟ ଜିନିଷପତ୍ର ଖରିଦ୍ କରିହେବ । ପନିପରିବା ଫଳମୂଳ ଛଡ଼ା ଆଉ ସବୁ ଜିନିଷ ଏହି ଗୋଟିଏ ସ୍ଥାନରୁ ମିଳିପାରିବ । ଆମେରିକାର ସ୍ତ୍ରୀ ଲୋକମାନେ ସାଧାରଣତଃ ଘର ପାଇଁ ଆବଶ୍ୟକୀୟ ଜିନିଷପତ୍ର ଏହି ଷ୍ଟୋରରୁ କିଣାକିଣି କରନ୍ତି । କୌଣସି ଦିନରେ ଯଦି ଗୋଟିଏ ଷ୍ଟୋରରେ ପଶିଲେ, ଘରପାଇଁ ସବୁ ଜିନିଷପତ୍ର କିଣି ସନ୍ଧ୍ୟାବେଳକୁ ବାହାରି ଆସିବେ । କିଣାଳିମାନଙ୍କ ଖାଇବା ପିଇବା ପାଇଁ ସେହି ଷ୍ଟୋର ଭିତରେ ରେଷ୍ଟୁରାଣ୍ଟ ଅଛି । ଭୋକ ହେଲା ତ କିଛି ଜଳଖିଆ ଖାଇସାରି ଜିନିଷ କିଣିଲେ । ଆମେରିକାର ସବୁ ବଡ଼ ବଡ଼ ଡିପାର୍ଟମେଣ୍ଟାଲ ଷ୍ଟୋରରେ ରେଷ୍ଟୁରାଣ୍ଟ ଅଛି ।

ପ୍ରତି ତିନି ଚାରିମାସରେ ଡ଼ିପାର୍ଟମେଣ୍ଟାଲ ଷ୍ଟୋରମାନଙ୍କରେ କ୍ଲିଅରେନ୍‌ସ ସେଲ ହୁଏ । ସେଲ୍‌ରେ ଜିନିଷଗୁଡ଼ିକ ଖୁବ୍ ସସ୍ତାରେ ମିଳେ । ଆମେରିକାନ୍ ଗୃହିଣୀମାନେ ଏହି ସେଲ୍‌ରେ ଜିନିଷ ଶସ୍ତାରେ କିଣିବା ପାଇଁ ପାଗଳ । କେଉଁଠି କେତେବେଳେ ସେଲ୍ ହୁଏ, ତହିଁର ଖବର ଖବରକାଗଜମାନଙ୍କରେ ବାହାରେ । ସେମାନେ ସେହି ଖବର ରଖି ଏହି ସେଲ୍‌ରୁ ଶସ୍ତାରେ ଜିନିଷ କିଣିବା ପାଇଁ ଦୌଡ଼ନ୍ତି । ମାର୍କିନ୍ ଗୃହିଣୀ ଜୀବନରେ ଏହା ଏକ ବିଶିଷ୍ଟ କଥା । ଯିଏ ଯେଉଁ ସେଲ୍‌ରୁ ଯେତେ ଭଲ ଜିନିଷ କିଣି ପାରିଲା, ତାର ସେତେ ବାହାଦୁରୀ । ଆମେରିକାରେ ପ୍ରାୟ ପ୍ରତିଦିନ କେଉଁଠି ନା କେଉଁଠି ଏହି କ୍ଲିଅରେନ୍‌ସ ସେଲ୍ ଚାଲିଥାଏ ।

—*—

## ଦ୍ୱାଦଶ ଅଧ୍ୟାୟ

# ଆମେରିକାରେ ଆମ ସାଙ୍ଗସାଥୀ

ଆମେ ଆମେରିକାରେ ପହଞ୍ଚିଲା ବେଳକୁ ଡକ୍ଟର ମହାପାତ୍ରଙ୍କୁ ଛାଡ଼ି ଆମ ସମସ୍ତଙ୍କର ସମସ୍ୟା ହୋଇ ପଡ଼ିଥାଏ, ସେମାନଙ୍କ ଦେଶର ଭାଷା । ଇଂରାଜୀ ଭାଷା ସହିତ ସାମାନ୍ୟ ପରିଚୟ ଥିଲେହେଁ ସେମାନଙ୍କ ଦେଶର ଇଂରାଜୀ ଭାଷା ବୁଝି ସେମାନଙ୍କ ସହିତ କଥାବାର୍ତ୍ତା କରିବା ଏକ ବଡ଼ ସମସ୍ୟା ହୋଇ ପଡ଼ିଥାଏ । ତା ଛଡ଼ା ସେମାନଙ୍କ ଦେଶର ଲୋକଙ୍କ ଉଚ୍ଚାରଣ ଏମିତି ଆମ ଦେଶର ଇଂରାଜୀ ପଢ଼ୁଆ ଲୋକେ ବି ପ୍ରଥମେ କିଛି ବୁଝି ପାରିବେ ନି । ତେବେ ଆମେ ପ୍ରଥମେ ଯାଇ ଯେଉଁ ଭଦ୍ରମହିଳାଙ୍କ ଘରେ ରହିଲୁ ତାଙ୍କ ସାହାଯ୍ୟ ଆମର ଭୁଲିବାର ନୁହେଁ । ଆମେରିକା ଦେଶର ଭାଷା ବୁଝିବାରେ ତାଙ୍କର ସାହାଯ୍ୟ ଏବେ ସୁଦ୍ଧା ମନେ ପଡ଼ିଲେ ତାଙ୍କର ଅକୁଣ୍ଠିତ ସାହାଯ୍ୟକୁ ଧନ୍ୟବାଦ ନ ଦେଇ ରହି ହୁଏ ନି । ସେହି ଭଦ୍ର ମହିଳାଙ୍କ ନାଁ ହେଲା ମିସେସ ଲୁଇସ୍ । ଖୁବ୍ ଉଚ୍ଚ ଶିକ୍ଷିତା ସେ । ଉଦ୍ଭିଦ ବିଜ୍ଞାନରେ ଏମ୍: ଏସ୍ ସି ପାସ୍ । ଆଗରୁ ବ୍ୟବସାୟ କରୁଥିଲେ, ଏବେ ବ୍ୟବସାୟ କରୁ ନାହାନ୍ତି । ଅତି ସୁନ୍ଦର ଲୋକ । ନିଜ ବାସଗୃହର ତଳ ମହଲା ଓ ତୃତୀୟ ମହଲା ଭଡ଼ା ଦେଇ ଦ୍ୱିତୀୟ ମହଲାରେ ନିଜେ ଅବସ୍ଥାନ କରନ୍ତି । ଏହି ଦୁଇ ମହଲାର ଭଡ଼ାରୁ ଯଥେଷ୍ଟ ଆୟ ହୁଏ । ତାଛଡ଼ା ସ୍ୱାମୀ ବ୍ରେଣ୍ଡାଇସ୍ ବିଶ୍ୱବିଦ୍ୟାଳୟରେ ବ୍ୟବସାୟ କରନ୍ତି । ଏହି ଦୁଇଟି ଆୟରେ ତାଙ୍କ

ପରିବାର କେଣ୍ଟ ଚଳିଯାଏ । ମୋତେ ଇଂରାଜୀ ଭାଷା ଶିକ୍ଷାଦେବା ଘରକୁ ସଜାଇବା, ଘର, ପାଇଖାନା, ଗାଧୁଆ ଘର ଆଦିକୁ ପରିଷ୍କାର ପରିଚ୍ଛନ୍ନ କରିବା ଯାଏ ମୁଁ ତାଙ୍କର ଠାରୁ ପ୍ରଥମେ ଶିଖିଲି । ସ୍ତ୍ରୀ ଲୋକଙ୍କ ଭିତରେ ସେ ମୋର ପ୍ରଥମ ପରିଚିତା । ଏବେ ମଧ୍ୟ ତାଙ୍କ ସହିତ ପତ୍ର ବିନିମୟ ଚାଲିଛି ।

ସେହି ଘରର ତଳ ମହଲାରେ ରହୁଥିଲେ ଆଉ ଜଣେ ମାର୍କିନ୍ ପରିବାର । ସେହି ପରିବାରର ଗୃହିଣୀ ମିସେସ୍ ସୋନିଆ ଟାଉଲନ୍ ମୋର ବିଶେଷ ପରିଚିତା । ମୋତେ ଭାଷା ଶିଖାଇବାରେ, ଝିଅକୁ ପଢ଼ାଇବାରେ ତାଙ୍କ ପରିଶ୍ରମ ଭୁଲିବାର ନୁହେଁ । ସେ ମଧ୍ୟ ଜଣେ ଏମ୍. ଏ. ପାସ୍ । ଆଗରୁ ସ୍କୁଲରେ ଶିକ୍ଷକତା କରୁଥିଲେ, ଏବେ ଚାକିରି କରୁ ନାହାନ୍ତି । ଆମେ ଯେତେବେଳେ ସେହି ଘର ଛାଡ଼ି ଅନ୍ୟ ଗୋଟିଏ ଭଡ଼ା ଘରକୁ ଗଲୁଁ, ମିସେସ୍ ଟାଉଲନ୍ ଓ ମିସେସ୍ ଲୁଇସ୍ ଆମ ବସାକୁ ସବୁବେଳେ ଯିବା ଆସିବା କରନ୍ତି । ମୋ ଝିଅର ଆମେରିକାରେ ପ୍ରଥମ ଜନ୍ମଦିନ ଉତ୍ସବ ତାଙ୍କ ଘରେ କରିଥିଲେ ମିସେସ୍ ଟାଉଲନ୍ । ଆମ ପରିବାର ସହିତ ତାଙ୍କ ସମ୍ପର୍କ ଥିଲା ଅତି ଗାଢ଼ । ଏବେ ମଧ୍ୟ ସେହି ପରିବାର ସହିତ ଆମର ପତ୍ର ବିନିମୟ ଚାଲିଛି ।

ଆମ ପରିବାର ସହିତ ପରେ ପରିଚିତ ହେଲେ ଆମ ନୂତନ ଭଡ଼ାଘରର ମାଲିକାଣୀ ମିସେସ୍ ଗ୍ଲେଟି ଓ ତାଙ୍କ ଝିଅ ମିସେସ୍ ଲିଣ୍ଡି । ମିସେସ୍ ଗ୍ଲେଟିଙ୍କ ସହିତ ଆମ ପରିଚୟ ଖୁବ୍ ଘନିଷ୍ଠ ହୁଏ ତାଙ୍କ ଭଡ଼ାଘରେ କିଛିଦିନ ରହିବା ପରେ । ଅତି ସୁନ୍ଦର ଲୋକ । ମିସେସ୍ ଗ୍ଲେଟି ବେଶ୍ ବୟସ୍କା, ବର୍ଷ ସତୁରି ପାଖାପାଖି ହେବ । ଆମେ ଭାରତୀୟ ହେଲେହେଁ, ଆମ ପ୍ରତି ଟିକିଏ ଘୃଣା ନାହିଁ । ନୂଆ ନୂଆ ସେମାନଙ୍କ ଚୁଲ୍ଲୀ, ଓଭନ୍ ଆଦିରେ ମୋର



ପରିବାରର ଘନିଷ୍ଠ ବନ୍ଧୁ
ମିସେସ୍ ଗ୍ରେସ ଲୁଥର ଓ ତାଙ୍କ ପରିବାର

ଗାଡ଼ିବା ଅଭ୍ୟାସ ନ ଥିବାରୁ ସେ ମୋତେ ଆସି ଶିଖାଇ ଦେଉଥିଲେ । ଆମେରିକାନ୍ ଗାଡିରେ କେମିତି ଚଳିବାକୁ ହୁଏ, ଧୀରେ ଧୀରେ ମୁଁ ତାଙ୍କରଠାରୁ ଶିଖିଲି । ସେଥି ସହିତ ମୋତେ ସାହାଯ୍ୟ କଲେ ତାଙ୍କ ସବା ସାନଝିଅ ଲୁସି । ଭାରତୀୟଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ବେଶ୍ ଅଧିକ । ଘୃଣା ବୋଲି ଚିଜଏ ନାହିଁ । ଏମାନେ ଉଚ୍ଚ ଶିକ୍ଷିତା ନ ହେଲେହେଁ, ସେମାନଙ୍କ ଚାଲିଚଳନ, କଥାବାର୍ତ୍ତା ସୂଚାଇ ଦେବ ସତେ ଯେମିତି ସେମାନେ ଉଚ୍ଚ ଶିକ୍ଷିତା ।

ଆମ ପରିବାର ସହିତ ପରେ ଘନିଷ୍ଠ ହୋଇ ପଡ଼ିଲେ ମିସେସ୍ ଲୁଡ଼ଜ । ବେଷ୍ଟନସ୍ଥିତ ନର୍ଥ ଇଷ୍ଟର୍ଣ୍ଣ ବିଶ୍ୱବିଦ୍ୟାଳୟର ରସାୟନ ଅଧ୍ୟାପକ ଡକ୍ଟର ଫେ ଲୁଡ଼ଜଙ୍କ ସେ ହେଉଛନ୍ତି ସ୍ତ୍ରୀ । ନିଜେ ଖୁବ୍ ଉଚ୍ଚଶିକ୍ଷିତା । ସ୍ୱାମୀ ସ୍ତ୍ରୀ ଦୁହେଁ ଅତି ସାଧୁ ପ୍ରକୃତିର ଲୋକ । ସେମାନେ ମଦ ପିଇବା ବିରୋଧୀ । ସିଗାରେଟ୍ ଖାଇବାକୁ ଖୁବ୍ ଘୃଣା କରନ୍ତି । ଘରେ ଚା କି କଫି ଖାଆନ୍ତି ନି । ସେମାନେ ଭାବନ୍ତି ଏ ଗୁଡ଼ାକ ସବୁ ମାଦକ ଦ୍ରବ୍ୟ । ସଭ୍ୟ ମଣିଷ ପକ୍ଷରେ ଏ ସବୁ ଖାଇବା ପାପ । ଆମେରିକାରେ ମଦ ଖାଇବାକୁ ବିରୋଧ କରୁଥିବା ଯେଉଁ ଅନୁଷ୍ଠାନମାନ ଅଛି ସେ ଅନୁଷ୍ଠାନରେ ସେ ଜଣେ ପ୍ରଧାନ ଉଦ୍ୟୋକ୍ତା । ଛୋଟ ଛୋଟ ପିଲାମାନଙ୍କୁ ସଙ୍ଗଠନ କରାଇ ସେ ମଦ ବିରୋଧରେ ପ୍ରଚାର କରନ୍ତି । ଆମ ପରିବାର ମଦ ବିରୋଧୀ ବୋଲି ସେ ଆମକୁ ଖୁବ୍ ଭଲ ପାଆନ୍ତି । ଡାକ୍ତର ମହାପାତ୍ର ଓ ଆମ ପରିବାରକୁ ବହୁଥର ନିମନ୍ତ୍ରଣ କରି ନେଇଛନ୍ତି ନାନା ପ୍ରକାର ସଭା ସମିତିକୁ ଯେଉଁଠି ମଦ ବିରୋଧରେ ତୀବ୍ର ସମାଲୋଚନା କରାଯାଏ ।

ତାଙ୍କର ଯୋଗୁଁ ଆମେ ଆମେରିକାର ବହୁ ମହାସମିତିରେ ଯୋଗ ଦେଇ ପାରିଛୁ । ଡାକ୍ତର ମହାପାତ୍ରଙ୍କୁ ଅନେକ ଜାଗାରେ

ତାଙ୍କର ଯୋଗୁଁ ଅନୁରୋଧ ଆସିଛି ବକ୍ତୃତା ଦେବାପାଇଁ । ଯେତେବେଳେ ଶୁଣନ୍ତି ହିନ୍ଦୁ ସମାଜ ଓ ହିନ୍ଦୁ ଧର୍ମ ମହତ୍ୟଗାନ ହେଉଛିରେ, ସେତେବେଳେ ସେ ଆମ ସମାଜ ଓ ଧର୍ମକୁ ଧନ୍ୟବାଦ ନ ଦେଇ ରହି ପାରନ୍ତିନି । ଖାଲି ସେତିକି ନୁହେଁ ସେ ଭାବନ୍ତି ଓ କହନ୍ତି ମଧ୍ୟ ହିନ୍ଦୁ ଧର୍ମ ପୃଥିବୀର ଏକ ଶ୍ରେଷ୍ଠ ଧର୍ମ । ମାସାଚ୍ୟୁସେଟସ୍ ଅଞ୍ଚଳର ବହୁସ୍ଥାନ ଆମେ ତାଙ୍କର ସହିତ ବୁଲିଛୁ, ଯେଉଁଠି କି ଐତିହାସିକ ସ୍ଥାନମାନ ରହିଛି । ସେ ଆମକୁ ସେ ସବୁ ସ୍ଥାନ ନ ବୁଲାଇ ଛାଡ଼ି ନାହାନ୍ତି । କେଉଁ ସମୟରେ ଓ କେଉଁ ସ୍ଥାନରେ ଘରି ଭଲ ଭଲ ସେଓ ମିଳେ ସେ ଆମକୁ ସଙ୍ଗରେ ନେଇ ସେଗୁଡ଼ିକ କିଣାଇ ଦିଅନ୍ତି । ମାର୍କିନ୍ ପରିବାରର ବିଭିନ୍ନ ପର୍ବଦିନମାନଙ୍କରେ ଆମ ପରିବାରକୁ ତାଙ୍କ ଘରକୁ ଡାକି ଆମକୁ ମାର୍କିନ ପର୍ବ ପର୍ବାଣି ସହିତ ପରିଚିତ କରାଇ ଦିଅନ୍ତି । ସେଥି ସହିତ ଆମକୁ ପରିଚିତ କରାଇ ଦିଅନ୍ତି, ସେହି ସବୁ ଦିନମାନଙ୍କରେ ତାଙ୍କ ଘରକୁ ନିମନ୍ତ୍ରିତ ହୋଇ ଆସିଥିବା ଅନ୍ୟାନ୍ୟ ମାର୍କିନ ଅତିଥିମାନଙ୍କ ସହିତ । ପ୍ରତି ସପ୍ତାହରେ ଆମ ଘରକୁ ବୁଲି ନ ଆସିଲେ କି ଫୋନ୍‌ରେ ଦୁ’ ଘଡ଼ିର କଥା ବାର୍ତ୍ତା ନ କଲେ ସେ ରହି ପାରନ୍ତିନି । ପାଉଁରୋଟି, ବିସ୍କୁଟ, କେକ୍, ପାଏ ଆଦି ଆମେରିକାନ୍ ଖାଦ୍ୟ ତିଆରି ମୁଁ ତାଙ୍କଠାରୁ ପ୍ରଥମେ ଶିଖେ । ଆମେରିକାନ୍ ଢଙ୍ଗରେ ରନ୍ଧଣା ଓ ଖାଇବା ସେ ମୋତେ ପ୍ରଥମତଃ ଶିଖାନ୍ତି । ଆମ ପରିବାର ପ୍ରତି ତାଙ୍କ ସାହାଯ୍ୟ ଭୁଲିବାର ନୁହେଁ । ଗତ ତିନିବର୍ଷ ଧରି ଆମ ପରିବାର ତାଙ୍କ ପରିବାରଠାରୁ ବିଚ୍ଛିନ୍ନ ହୋଇଥିଲେ ହେଁ ଏବେ ବି ସେ ଆମକୁ ନାନା କଥାରେ ସାହାଯ୍ୟ କରୁଛନ୍ତି ।

ମିସେସ୍ ଗ୍ରେଣ୍ଡେଲ୍ ଆମ ପରିବାରର ଆଉ ଏକ ପରିଚିତା ମହିଳା । ତାଙ୍କ ସ୍ୱାମୀ ଜଣେ ଧର୍ମଯାଜକ । ଅତି ସୁନ୍ଦର ଲୋକ । ମିସେସ୍ ଗ୍ରେଣ୍ଡେଲଙ୍କ ସ୍ୱାମୀ ଲୋକଟି ଭାରତୀୟ । ଆମେରିକାର ଆଦିମ ଅଧିବାସୀ । ବରଂ ସେ ହେଉଛନ୍ତି ଜଣେ ମାର୍କିନ୍ ମହିଳା । ମିସେସ୍ ଗ୍ରେଣ୍ଡେଲ ବେଶ୍ ବୟସ୍କା, ଅତି ମେଳାପୀ ଓ ଭଦ୍ର । ତାଙ୍କ ଝିଅମାନେ ଅନେକ ସମୟରେ ଆମ ପରିବାର ସହିତ ବୁଲି ଯାଆନ୍ତି । ବଟ୍ଆଡ଼କୁ ବୁଲିଗଲାବେଳେ ତାଙ୍କ ଦୁଇ ଝିଅଙ୍କୁ ଆମେ ସଙ୍ଗରେ ନେଉଁ । ମିସେସ୍ ଲୁଡ଼ଭିଗଙ୍କ ସାହାଯ୍ୟରେ ଆମେ ସେମାନଙ୍କ ପରିବାର ସହିତ ପରିଚିତ ହେଉଁ ।

ଏହିଭଳି ଭାବରେ ସେଠାରେ ଆମେ ଓ୍ୱାଲ୍ଥାମ୍ର ବହୁ ପରିବାର ସହିତ ପରିଚିତ । ଆମେ ସେମାନଙ୍କ ଘରକୁ ବୁଲିଯାଉଁ, ସେମାନେ ଆମ ଘରକୁ ବୁଲିଆସନ୍ତି । ବାଟରେ ଘାଟରେ ଦେଖା ହୋଇଗଲେ କଥାବାର୍ତ୍ତା ନ କରି ଛାଡ଼ନ୍ତି ନାହିଁ । ପ୍ରତି ସପ୍ତାହରେ ଥରେ ଦୁଇଥର ଫୋନ୍ରେ କଥାବାର୍ତ୍ତା ନ ହେଲେ ନ ହୁଏ । ଟେଲିଫୋନ୍ର ଆବଶ୍ୟକତା ଦୈନନ୍ଦିନ ଜୀବନରେ କେତେ ଅଧିକ, ଆମେ ପ୍ରଥମେ ଆମେରିକାରେ ଥିଲାବେଳେ ଉପଲବ୍ଧି କଲୁଁ ।

ଓ୍ୱାଲ୍ଥାମ ବାହାରେ ଆମର ସବୁଠାରୁ ଘନିଷ୍ଠ ବନ୍ଧୁ ହେଉଛନ୍ତି ନିଉଜେରସିର ଡୋନର ପରିବାର । ମିସେସ୍ ସୁ ଡୋନର ଆମ ପରିବାର ପ୍ରତି ଏତେ ସ୍ନେହୀ ଯେ ସେକଥା ଭାଷାରେ ବର୍ଣ୍ଣନା କରିହେବନି । ଓ୍ୱାସିଙ୍ଗଟନରୁ ଆସିଲାବେଳେ ଓ ଆମେରିକା ଛାଡ଼ିଲାବେଳେ ଆମେ ସେମାନଙ୍କ ପରିବାରରେ ତେରଦିନ ରହିଛୁଁ । ମୋ ଝିଅ ଟୁନୁ ଓ ତାଙ୍କ ଝିଅ ଲିଜ ଭିତରେ

ବନ୍ଧୁତ୍ୱ ବେଶ୍ ଗାଢ଼ । ଆମ ଦୁଇଟି ପରିବାର ଏକାଠି ହେଲେ ଏତେ ଆନନ୍ଦିତ ହେଉଁ ଯେ ସେକଥା କହି ହେବ ନ ।

ମିସେସ ଡୋନରଙ୍କ ବାପାଙ୍କ ପରିବାର ସହିତ ଆମ ସମ୍ପର୍କ କିଛି କମ୍ ନୁହେଁ । ମିସେସ୍ ଡୋନରଙ୍କ ବାପା ଓ ମା ମିଷ୍ଟର ଓ ମିସେସ୍ ସୁଲିଭାନ୍ ଆମ ପରିବାରକୁ ନିଜ ସମ୍ପର୍କୀୟ ପରିବାର ଭଳି ଦେଖନ୍ତି । ମିସେସ ସୁଲିଭାନ୍ ଆମ ପରିବାରପ୍ରତି ଏତେ ସ୍ନେହୀ ଯେ ଭାଷାରେ ବର୍ଣ୍ଣନା କରିହେବନି । ଏବେବି ସେ ଚିଠିପତ୍ର ଦେବାରୁ ବିରତ ହୋଇନାହାନ୍ତି ।

ଆମ ପରିବାର ସହିତ ଘନିଷ୍ଠ ସମ୍ପର୍କ ଥିବା ଉପରୋକ୍ତ କେତେକ ମାର୍କିନ୍ ପରିବାରବ୍ୟତୀତ ଆହୁରି ବହୁପରିବାର ଅଛନ୍ତି । ସେଗୁଡ଼ିକର ଏକ ତାଲିକାଦେବା ସମ୍ଭବପର ନୁହଁ । ଏମାନଙ୍କ ଛଡ଼ା ବହୁ ଭାରତୀୟ ପରିବାର ସହିତ ଆମର ଗାଢ଼ ସୌହାର୍ଦ୍ଦ୍ୟ ଥିଲା । ସେହିସବୁ ପରିବାର ମଧ୍ୟରେ ମିଷ୍ଟର ଓ ମିସେସ୍ ରଙ୍ଗନାଥନ୍ ଡକ୍ଟର ଓ ମିସେସ୍ ଦାସଗୁପ୍ତ, ଡକ୍ଟର ଓ ମିସେସ୍ ଚୌଧୁରୀ, ଆଦି ପ୍ରଧାନ । ଏମାନଙ୍କ ମଧ୍ୟରୁ ରଙ୍ଗନାଥନ ପରିବାର ଆମ ଘରଠାରୁ ଅଳ୍ପ ଦୂରରେ ଏକ ସହରରେ ବସବାସ କରନ୍ତି । ଅନ୍ୟମାନେ ଆମ ରହୁଥିବା ପାଖ ଆଖ ସହରରେ ରହନ୍ତି ।

ଉପରୋକ୍ତ ପରିବାର ଭିତରେ ରଙ୍ଗନାଥନ୍ ପରିବାର ସହିତ ଆମର ସୌହାର୍ଦ୍ଦ୍ୟ ସବୁଠାରୁ ବେଶି । ଘରପାଖରେ ରହୁ ଥିବାରୁ ପ୍ରାୟ ପ୍ରତିଦିନ ଯିବାଆସିବା ଚାଲେ । ଡକ୍ଟର ରଙ୍ଗନଥନ୍ କଲେଜ ଚାଲିଗଲେ ମିସେସ୍ ରଙ୍ଗନାଥନ୍ ଆମ ବସାକୁ ଚାଲିଆସେ । ପିଲାମାନେ ସ୍କୁଲ ଚାଲିଯାଇଥିଲେ ଆମେ ଦୁହେଁ ବଜାର ବୁଲିଯାଉଁ

ବା ଅନ୍ୟ ସାଙ୍ଗମାନଙ୍କ ଘରକୁ ଯାଉଁ । ଡକ୍ଟର ମହାପାତ୍ରଙ୍କ ଭଳି ଡକ୍ଟର ରଙ୍ଗନ୍ଥନ୍ ପଦାର୍ଥ ବିଜ୍ଞାନରେ ପୋଷ୍ଟ ଡକ୍‌ଟରେଟ୍ ଫେଲୋ । ଆମ ଘରେ ପୁଅ କ ଝିଅର ଜନ୍ମଦିନ ନେଇ ସର୍ବପ୍ରଦାଣୀ ହେଲେ ମିସେସ୍ ବେଦମ୍ ରଙ୍ଗନାଥନ୍ ହୁଏ ପ୍ରଧାନ ପୁରୋଧା । ଆମେ ଆମେରିକା ଛାଡ଼ିବା କିଛିଦିନ ପୂର୍ବରୁ ସେମାନେ ଭାରତକୁ ଚାଲି ଆସିଥିଲେ । ଏବେ ସେମାନେ ମାନ୍ଦ୍ରାଜରେ ଅବସ୍ଥାନ କରୁଛନ୍ତି ।

ଡକ୍ଟର ଦାସଗୁପ୍ତ ଓ ଡକ୍ଟର ଚୌଧୁରୀ ଡକ୍ଟର ମହାପାତ୍ରଙ୍କ ଭଳି ରସାୟନ ବିଜ୍ଞାନରେ ପୋଷ୍ଟ ଡକ୍‌ଟରେଟ୍ ଫେଲୋ । ଏକା ବିଶ୍ୱବିଦ୍ୟାଳୟର ଏକା ବିଭାଗରେ କାମ କରନ୍ତି । ଡକ୍ଟର ଦାସଗୁପ୍ତଙ୍କ ଜନ୍ମ କଟକରେ । ତାଙ୍କ ନିଜ ବାପା କଟକରେ ଓକିଲ । ଅବଶ୍ୟ ସେ କଲିକତାରେ ରହୁଥିବାରୁ ଓଡ଼ିଶା ସହିତ ସେତେ ସମ୍ପର୍କ ନାହିଁ । ତେବେ ବେଶ୍ ଓଡ଼ିଆ କହିପାରନ୍ତି । ତାଙ୍କ ସ୍ତ୍ରୀ କୃଷ୍ଣା ଅତି ସୁନ୍ଦର ଲୋକ । ଆମ ଘରକୁ ଅନେକ ସମୟରେ ଆସନ୍ତି । ଆମେ ମଧ୍ୟ ତାଙ୍କ ଘରକୁ ଅନେକ ସମୟରେ ବୁଲିଯାଉଁ ।

ଡକ୍ଟର ଚୌଧୁରୀ ଓ ତାଙ୍କ ସ୍ତ୍ରୀ ଆମ ସହରର ନିକଟବର୍ତ୍ତୀ ଏକ ସହରରେ ରହନ୍ତି । ଆମ ଘରଠାରୁ ବେଶି ଦୂର ନୁହେଁ । ମାତ୍ର ଦୁଇ ତିନି ମାଇଲ ଦୂର । ବୋଷ୍ଟନ, କେମ୍ବ୍ରିଜ୍ ସହରରେ କେଉଁସ୍ଥାନରେ ଭେଟ୍କି, ରୋହୁ ମାଛ ମିଳେ, ଖୋଜି ଖୋଜି ସେମାନେ ବାହାର କରିଥିଲେ । ସେଇମାନଙ୍କ ଯୋଗୁ ଆମେ ପ୍ରତି ସପ୍ତାହରେ କେମ୍ବ୍ରିଜ୍ ସହରସ୍ଥ ହାରଭାର୍ଡ଼ ବିଶ୍ୱବିଦ୍ୟାଳୟ ନିକଟସ୍ଥ ଏକ ଦୋକାନରୁ ଶୀତମିଶ ଭେଟ୍କି ରୋହୁମାଛ ଖରିଦ୍

କରନ୍ତି । ତାଛଡ଼ା ଭାରତୀୟ ପରିବାର ଯଥା—ଚଟର୍ଜୀ ଦମ୍ପତି, ଗ୍ରେଟ ଗ୍ରେଟ ବାଡ଼ ବାଇଗଣ, ଘଗ କଞ୍ଚାଲଙ୍କା ଆଦି କେଉଁଠି ମିଳେ, ତାହାଁର ସନ୍ଧାନ ସେ ଆମକୁ ଦିଅନ୍ତି ।

ବୋଷ୍ଟନ୍‌ରେ ଭାରତୀୟ ପରିବାର ବେଶ୍ ଅଧିକ । ଭାରତୀୟ-ମାନଙ୍କ ମିଟିଂରେ ବହୁ ଭାରତୀୟ ପରିବାରଙ୍କ ସହିତ ଦେଖା-ସାକ୍ଷାତ ହୁଏ । କେତେ 'କଥାବାର୍ତ୍ତା' ହୁଏ । କିଏ କେତେ ପ୍ରକାର ଅନୁଭୂତି ବର୍ଣ୍ଣନା କରନ୍ତି ।

ଆମର ଆମେରିକାରେ ରହଣୀର ଦ୍ଵିତୀୟ ବର୍ଷରେ ଆମର ପରିଚୟ ହେଲା ଆଉ ଦୁଇଜଣ ଭାରତୀୟ ମହିଳାଙ୍କ ସହିତ । ଜଣେ ହେଉଛନ୍ତି ଆମ ଓଡ଼ିଶାର ଲୀଳାବତୀ ପଟ୍ଟନାୟକ । ସେ ଜଣେ ଡାକ୍ତର । ବର୍ଷକ ପାଇଁ ଡାକ୍ତରୀ ବିଦ୍ୟାରେ ବିଶେଷ ଜ୍ଞାନ ଅର୍ଜନ କରିବା ପାଇଁ ହାରଭାର୍ଡ ବିଶ୍ଵବିଦ୍ୟାଳୟକୁ ଯାଇଥିଲେ । ଅନ୍ୟ ଜଣକ ହେଉଛନ୍ତି ତାଙ୍କର ସହପାଠିନୀ ମିସେସ ମାଲହୋତ୍ରା । ଏହି ଦୁଇ ଭାରତୀୟ ମହିଳା ବୋଷ୍ଟନର ଏକ ହଷ୍ଟେଲରେ ଅବସ୍ଥାନ କରୁଥାନ୍ତି । ପ୍ରତି ମାସରେ ଥରେ ଦୁଇଥର ସେମାନେ ଆମ ବସାକୁ ଆସୁଥିଲେ ବା ଆମେ ସେମାନଙ୍କ ବସାକୁ ଯାଉଥିଲୁ । ବିଦେଶରେ ଓଡ଼ିଆ ଝିଅଟେ ଦେଖିଲେ ମନ କେତେ ଆନନ୍ଦ ହୁଏ, ମୁଁ ଉପଲବ୍ଧି କରିଥିଲି, ଯେଉଁଦିନ କୁମାରୀ ଲୀଳାବତୀ ପଟ୍ଟନାୟକ ଆମ ଘରକୁ ଆସିବା ପାଇଁ ମୋତେ ଫୋନ୍ କରିଥିଲେ । ଆମ ଘରେ ପୁଅ, ଝିଅଙ୍କର ଜନ୍ମଦିନ ନେଇ ପର୍ବପର୍ବାଣୀ ହେଲେ ସେମାନେ ଆମ ଘରକୁ ନ ଆସି ରହି ପାରୁନଥିଲେ । ଆମ ଘରେ କୌଣସି ଭୋଜି ହେଲେ ସେମାନଙ୍କୁ ନିମନ୍ତ୍ରଣ ନ କରି ରହିପାରୁନଥିଲୁ । ଆମେ ଭାରତ ଫେରିବା ପୂର୍ବରୁ

ସେମାନେ ଭାରତ ଫେରି ଆସିଥିଲେ । ସେମାନେ ଯେଉଁଥର ହାରଭାର୍ଡ କନ୍‌ଭୋକେସନରୁ ଡିଗ୍ରୀ ନେଲେ, ଆମକୁ ନିମନ୍ତ୍ରଣ କରିଥିଲେ ହାରଭାର୍ଡ କନ୍‌ଭୋକେସନ୍ ଦେଖିଯିବା ପାଇଁ । ଆମେ ସେମାନଙ୍କ ଯୋଗୁଁ ହାରଭାର୍ଡ କନ୍‌ଭୋକେସନ୍ ଦେଖିବାର ସୁଯୋଗ ପାଇଥିଲୁଁ ।

ଡକ୍ଟର ଓ ମିସେସ ଚେଟର୍ଜି ଆମେରିକାରେ ବସବାସ କରି ରହିଥିବା ଭାରତୀୟ ପରିବାର ଭିତରୁ ଗୋଟିଏ । ଡକ୍ଟର ଚେଟର୍ଜି ଡକ୍ଟର ମହାପାତ୍ରଙ୍କ ପଢ଼ାସାଙ୍ଗ । କଲିକତାରେ ଏମ୍. ଏସ୍.ସି. ପଢ଼ୁଥିଲା ବେଳେ ସେ ଦୁହେଁ ଏକ ସଙ୍ଗରେ ପଢ଼ୁଥିଲେ । ଡକ୍ଟର ସୁବ୍ରତ ଚେଟର୍ଜି ଓ ତାଙ୍କ ସ୍ତ୍ରୀ ଓ ଝିଅପିଲା ଆମେରିକାରେ ପୁରାପୁରି ରହିଯାଇଛନ୍ତି । ଚାକିରିରୁ ଅବସର ନେଲେ ଭାରତକୁ ଫେରିବେ । ବେଶ୍ ଆନନ୍ଦରେ ଆମେରିକାରେ ଅଛନ୍ତି । ତାଙ୍କ ସ୍ତ୍ରୀ ଅତ୍ୟନ୍ତ ସୁନ୍ଦର ଲୋକ, ଭାରି ମେଳାପୀ । ଘଣ୍ଟା ଘଣ୍ଟା ଧରି ଫୋନ୍‌ରେ ମୋ ସହିତ ମିସେସ୍ ଚେଟର୍ଜିଙ୍କ କଥାବାର୍ତ୍ତା କରନ୍ତି । ଦ୍ୱିପ୍ରହରରେ ଆମ ଦୁହିଁଙ୍କ ଭିତରେ ଏତେ ସମୟ ଧରି କଥାବାର୍ତ୍ତା ଚାଲେ ଯେ ଆମେରିକାନ୍‌ମାନେ ଆଶ୍ଚର୍ଯ୍ୟ ହୁଅନ୍ତି । ଆମେ ସେମାନଙ୍କ ଘରକୁ ବୁଲିଯାଉଁ, ସେମାନେ ଆମ ଘରକୁ ବୁଲିଆସନ୍ତି ।

ଏହିସବୁ ଭାରତୀୟ ପରିବାର ମେଳରେ ଆମେ ଆମେରିକାରେ ଏତେ ସୁଖରେ ଥାଉଁ ଯେ ଭାରତୀୟ ସମାଜର ଅଭାବ ଆମେ ମୋଟେ ଅନୁଭବ କରୁ ନ ଥିଲୁ । ନାନା ଦେଶପ୍ରବାସୀଙ୍କ ମାର୍କିନ ପରିବାର ସହିତ ଏହି ଭାରତୀୟ ପରିବାରଗୁଡ଼ିକ ଆମ ଘରେ ଏକଜିତ ହୁଅନ୍ତି । ଏହି ମାନଙ୍କ ମେଳରେ ଆମର ଦୁଇ

ବର୍ଷରୁ ଅଧିକ ରହଣୀକାଳ ଆମେରିକାରେ କଟିଗଲା, ଆମକୁ ଦୀର୍ଘ ଦୁଇବର୍ଷ ଦୁଇମାସ ଭଳି ଲାଗିଲା । ମାର୍କିନ ପରିବାର ଆମକୁ ଖୁବ୍ ଭଲ ଆଖିରେ ଦେଖୁଥିଲେ । ଏକ ସ୍ୱାଧୀନ ଜାତି ଆଉ ଏକ ସ୍ୱାଧୀନ ଜାତିକୁ ଯେଉଁ ସମ୍ମାନ ଦିଏ, ସେହି ସମ୍ମାନ ସେମାନେ ଆମକୁ ଦେଉଥିବାରୁ ସେମାନଙ୍କ ସମାଜରେ ଆମର ଚଳିବାରେ କିଛି ଅସୁବିଧା ଉପୁଜି ନ ଥିଲା । ସେମାନଙ୍କ ସ୍ନେହ, ଶ୍ରଦ୍ଧା, ସହାନୁଭୂତି ଏତେ ଗାଢ଼ ଥିଲା, ଆମେ ଏବେବି ସେଗୁଡ଼ିକୁ ବିସ୍ମୃତ ହୋଇନୁ ।

—*—

ତ୍ରୟୋଦଶ ଅଧ୍ୟାୟ

# ଆମେରିକାର ପର୍ବପର୍ବାଣୀରେ ମାର୍କିନ ଗୃହିଣୀର କାମ

ଆମ ଦେଶର ପର୍ବପର୍ବାଣୀକୁ ଆମ ଦେଶର ସ୍ତ୍ରୀ ଲୋକମାନେ ଯେମିତି ଧରି ରଖିଛନ୍ତି, ସେମିତି ଆମେରିକାର ପର୍ବପର୍ବାଣୀକୁ ସେମାନଙ୍କ ଦେଶର ଗୃହିଣୀମାନେ ଧରି ରଖିଛନ୍ତି । ଆମ ଦେଶରେ ଯେଉଁ ଗୃହିଣୀମାନେ ଅତି ଆଧୁନିକା, ସେମାନଙ୍କ ଘରେ ପର୍ବପର୍ବାଣୀକୁ କୁସଂସ୍କାର, ଅନ୍ଧବିଶ୍ୱାସ କହି ଠିକ୍ ଭାବରେ ପାଳନ କରିପାରନ୍ତି, କିନ୍ତୁ ଆଧୁନିକ ମାର୍କିନ୍ ସମାଜରେ ସେମିତି ନାହିଁ । ମାର୍କିନ୍ ଗୃହିଣୀମାନେ ଯେତେ ଆଧୁନିକ ହେଲେବି ପର୍ବପର୍ବାଣୀ ପାଳନ କରିବାରେ ଦ୍ୱିଧା କରନ୍ତି ନାହିଁ । ଠିକ୍ ସାମାଜିକ ରୀତି ଅନୁସାରେ ସେମାନେ ପର୍ବପର୍ବାଣୀ ପାଳନ କରନ୍ତି । ଏହା ସମସ୍ତେ ସ୍ୱୀକାର କରିବେ, ମାର୍କିନ ଗୃହିଣୀମାନେ ଆମ ଦେଶର ଗୃହିଣୀମାନଙ୍କଠାରୁ ଅଧିକ ଶିକ୍ଷିତା, ଅଧିକ ରୁଚିସମ୍ପନ୍ନ ଓ ଅଧିକ ଆଧୁନିକ । ତଥାପି ସେମାନେ ଧର୍ମ ବା ସାମାଜିକ ପର୍ବପର୍ବାଣୀକୁ ପାଳନ କଲାବେଳେ ଏମିତି ଭାବଭଙ୍ଗୀ ଦେଖାନ୍ତି, ଯିଏ ଦେଖିଲେ ଭାବିବ ସେମାନେ ଯେମିତି ଉଚ୍ଚ ଶିକ୍ଷିତା ନୁହଁନ୍ତି ।

ଆମ ଦେଶରେ ଖୁବ୍ ଉଚ୍ଚ ଶିକ୍ଷିତ ଓ ରୁଚିସମ୍ପନ୍ନ ପରିବାରରେ କେତେଜଣ ସ୍ତ୍ରୀଲୋକ ଗାଁ ମଫସଲର ସ୍ତ୍ରୀ ଲୋକ-

ମାନଙ୍କ ଭଳି ନାନାପ୍ରକାର ଉପ୍ରାସ, ବ୍ରତ କରନ୍ତି, ଠାକୁର ଠାକୁରାଣୀଙ୍କ ପାଖକୁ ଯାଇ ମୁଣ୍ଡିଆ ମାରନ୍ତି, ଏମିତିକି ଗୁରୁବାରରେ ସ୍ତ୍ରୀ ଲୋକମାନେ ଆମିଷ ନ ଖାଇବା ରୀତି ଦେଖାନ୍ତି । କିନ୍ତୁ ଆମେରିକାର ଖୁବ୍ ଆଧୁନିକ ପରିବାରକୁ ଯାଅ, ଦେଖିବ ସେମାନେ ପ୍ରତି ରବିବାର ଦିନ ନିଜ ସ୍ୱାମୀ ପିଲଙ୍କୁ ନେଇ ଚର୍ଚ୍ଚକୁ ଯିବେ, ସେଠି ପ୍ରାର୍ଥନାରେ ଯୋଗ ଦେବେ । ଈଶ୍ୱର ବିଶ୍ୱାସ ଥାଉ ବା ନ ଥାଉ ଚର୍ଚ୍ଚକୁ ଯାଇ ପ୍ରାର୍ଥନା କରିବା ରୀତି ଅନେକ ମାର୍କିନ୍ ଗୃହିଣୀଙ୍କଠାରେ ପାଇବ । ହିନ୍ଦୁ ସମାଜରେ ଯେଉଁସବୁ ପର୍ବପର୍ବାଣୀ ଅଛି, ସେଗୁଡ଼ିକୁ ସେମାନେ ବେଶ୍ ମନଦେଇ ପାଳନ କରନ୍ତି ।

ମାର୍କିନ୍ ପରିବାରରେ ଗୋଟିଏ ବଡ଼ ପର୍ବ ହେଲା "ଥେଙ୍କସ ଗିଭିଙ୍ଗ୍ ଡେ" ବା 'ଧନ୍ୟବାଦ ଜ୍ଞାପନ ଦିବସ ।' ଏହି ଦିବସଟିରେ ମାର୍କିନ୍ ଗୃହିଣୀର କାମ ସବୁଠାରୁ ବେଶି । ବନ୍ଧୁ ବାନ୍ଧବ, ନୂଆ ନୂଆ ଅତିଥିମାନଙ୍କୁ ଡାକି ଭୋଜି ଖାଇବାକୁ ଦେବା ହେଲା ବଡ଼ କାମ । ଏହି ପର୍ବରେ ଟର୍କିମାଂସ ହେଲା ପ୍ରଧାନ ମାଂସ । ଟର୍କି ହେଲା କୁକୁଡ଼ାଭଳି ଏକପ୍ରକାର ପ୍ରାଣୀ । ଏହାର ମାଂସ ଏଇ ଦିନରେ ଖିଆଯାଏ । ଟର୍କିଗୁଡ଼ାକ ବେଶ ବଡ଼ ବଡ଼ । ଗୋଟିଏ ଗୋଟିଏ ଟର୍କି ଦେହରୁ ବାରବାର ମହଣେ ପର୍ଯ୍ୟନ୍ତ ମାଂସ ଉତ୍ପାଦନ ହେବା ଏବେ ଆମେରିକାରେ ସମ୍ଭବ ହେଲଣି । ଅବଶ୍ୟ ସାଧାରଣ ଟର୍କି ଦେହରୁ ଆଠ ଦଶସେର ପର୍ଯ୍ୟନ୍ତ ମାଂସ ବାହାରେ । ଟର୍କି ମାଂସ ସହିତ ଅନ୍ୟାନ୍ୟ ବହୁପ୍ରକାର ଖାଦ୍ୟ ପରଶିବା ମାର୍କିନ୍ ପରିବାରରେ ଦେଖାଯାଏ । ଆମେରିକାରେ ପଚିଶବାର ଘର ପାଞ୍ଚମାସ ମଧ୍ୟରେ

ଆମେ ସର୍ବପ୍ରଥମ ଏହି ପର୍ବଦିନରେ ମିସେସ୍ ନୃତ୍ତରଙ୍କ ଘରକୁ ନିମନ୍ତ୍ରିତ ହୋଇ ଯାଇଥିଲୁଁ । ଆମେ ଟର୍କି ମାଂସ ଖାଉନୁନି ବୋଲି ଆମପାଇଁ ମିସେସ ନୃତ୍ତର ଏତେପ୍ରକାର ଖାଦ୍ୟ ତିଆରି କରିଥିଲେ ଯେ ସେ ଖାଦ୍ୟ ଆମେ କେବେ ଭୁଲି ପାରିବୁନି ।

ସେମାନଙ୍କ ଖ୍ରୀଷ୍ଟମାସ ପର୍ବ ଗୋଟିଏ ବଡ଼ ପର୍ବ । ଏ ଦିନରେ ମଧ୍ୟ ମାର୍କିନ୍ ଗୃହିଣୀ ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣକରି ଖୁଆଏ । ସାଙ୍ଗସାଥି, ବନ୍ଧୁବାନ୍ଧବମାନଙ୍କ ଭିତରେ ଉପହାର ଦିଆନିଆ ଚାଲେ । କ'ଣ ଖିଆପିଆ ହେବ, କ'ଣ ଉପହାର ଦିଆନିଆ ହେବ ଠିକ୍ କରେ ମାର୍କିନ୍ ଗୃହିଣୀ ।

ଇଷ୍ଟର ପର୍ବ ସେମାନଙ୍କର ଆଉ ଏକ ବଡ଼ ପର୍ବ । ଏଥିରେ ମଧ୍ୟ ସେମିତି ନିମନ୍ତ୍ରଣ, ଖିଆପିଆ ଲାଗେ । ତାଛଡ଼ା ଫାଦରସ୍‌ଡେ ମଦରସ୍‌ଡେ ଆଦି ଅଛି । ଏଥିରେ ପୁଅଝିଅମାନେ ନାନାପ୍ରକାର ଉପହାର ଆଣି ବାପ ମାଙ୍କୁ ଭେଟି ଦିଅନ୍ତି । ପୁଅ ବାପକୁ କ'ଣ ଭେଟି ଦେବ, ଠିକ୍ କରେ ବୋହୂ । ଏମିତିକି ବୋହୂ ଯାଇ ବଜାରରୁ କିଣି ଆଣେ ।

ତାଛଡ଼ା ହାଲୋଇନ୍ ହେଲା ଏକ ସାମାଜିକ ପର୍ବ । ଏଥିରେ ଛୋଟ ଛୋଟ ପୁଅଝିଅମାନେ ନାନାପ୍ରକାର ମୁଖା ପିନ୍ଧି ସନ୍ଧ୍ୟାପରେ ନିଜ ପଡ଼ାର ଭିନ୍ନ ଲୋକଙ୍କ ଘରକୁ ଯାଇ ନାଚନ୍ତି । ମାର୍କିନ୍ ଗୃହିଣୀମାନେ ତ'ପୂର୍ବ ଦିନ ଆଗରୁ ଏହି ଛୋଟ ଛୋଟ ପିଲାମାନଙ୍କୁ ବାଣ୍ଟିବା ପାଇଁ ନାନାପ୍ରକାର କିନିଷ ଖାଦ୍ୟପଦାର୍ଥ କିଣି ଆଣି ରଖିଥାନ୍ତି । ସନ୍ଧ୍ୟାଆଗରୁ ଖାଇପିଇ ଦେଇ ଘରେ ବସିଥାନ୍ତି, ଏହିସବୁ ବାଣ୍ଟିବାପାଇଁ । ଥରକୁଥର ଦଳ ଦଳ ପିଲା ଆସୁଥିବେ ଏମାନେ ସେମାନଙ୍କୁ ନାନାପ୍ରକାର ପଦାର୍ଥ ବାଣ୍ଟୁଥିବେ । ଏହି

ବଣ୍ଟାବୁଣୀ ଗଡ ବାରଟା ଗୋଟାଏ ପର୍ଯ୍ୟନ୍ତ ଚାଲେ । ପ୍ରଥମ ବର୍ଷ ଆମେ ଏ ପର୍ବର ତାତ୍ପର୍ଯ୍ୟ ଜାଣି ନ ଥିଲୁ । ଦ୍ୱିତୀୟ ବର୍ଷ ବେଳକୁ ମୁଁ ସନ୍ଧ୍ୟାବେଳେ ବାଣ୍ଟିବା ପାଇଁ ପ୍ରସ୍ତୁତ ହୋଇ ଯାଇଥିଲି । ତା ଛଡ଼ା ସେମାନଙ୍କ ସ୍ୱାଧୀନତା ଦିବସ ଓ ଶ୍ରମିକ ଦିବସ ଆଦି ଅନ୍ୟାନ୍ୟ ଦିବସ ଅଛି । ଏଥିରେ ମଧ୍ୟ ସାଙ୍ଗସାଥିଙ୍କୁ ଉତ୍ସାହିତ କରିବାର ଦେଖାଯାଏ ।

ଏସବୁ ଛଡ଼ା ପୁଅ,ଝିଅଙ୍କର ଜନ୍ମଦିନ ଗୋଟିଏ ଗୋଟିଏ ପର୍ବ । ଆମ ଦେଶରେ ପିଲାମାନଙ୍କର ଜନ୍ମଦିନ ପାଳିବା ସବୁ ପରିବାରରେ ଦେଖାଯାଏ ନା, ସେମିତି ପାଳିବନି ଆମେରିକାରେ । ଆମେରିକାର ବାପ ମା'ମାନେ ଛୋଟ ଛୋଟ ପୁଅଝିଅଙ୍କର ଜନ୍ମଦିନ ବେଶ୍ ଭଲଭାବରେ ପାଳନ୍ତି । ପ୍ରଥମବର୍ଷ ଜନ୍ମଦିନ କେମିତି ସେ ଦେଶରେ ପାଳନ କରାଯାଏ ଆମେ ଜାଣି ନ ଥିଲୁ । ଦ୍ୱିତୀୟ ବର୍ଷ ବେଳକୁ ଆମେ ପୁଅ ଓ ଝିଅର ଜନ୍ମଦିନ ସେମାନଙ୍କ ଭଳି ପାଳିଲୁ ।

ଜନ୍ମଦିନ ପଡ଼ିବାର ଦୁଇ ତିନିଦିନ ପୂର୍ବରୁ ଯେଉଁ ପୁଅ କି ଝିଅର ଜନ୍ମଦିନ ପଡ଼େ, ସେ ତା ସାଙ୍ଗ ସାଥିଙ୍କୁ ନିମନ୍ତ୍ରଣ ପତ୍ର ବାଣ୍ଟେ । ସେହି ନିମନ୍ତ୍ରଣ ପତ୍ରରେ କେଉଁଦିନ କେତେବେଳେ ଜନ୍ମ ଦିନ ପର୍ବ ପାଳିତ ହେବ ଲେଖାଥାଏ । ଠିକ୍ ସେତିକି ବେଳକୁ ସାଙ୍ଗ ସାଥିମାନେ ନାନା ପ୍ରକାର ଉପହାର ନେଇ ଆସି ପହଞ୍ଚନ୍ତି । ପିଲାର ମା' ଜନ୍ମଦିନ ପାଇଁ ଗୋଟିଏ ବଡ଼ କେକ୍ କରିଥାଏ । ଏହାକୁ କହନ୍ତି ଜନ୍ମଦିନ କେକ୍ । ଗୋଟିଏ ବଡ଼ ଟେବୁଲ ଉପରେ ସେହି କେକ୍ ଥୁଆ ହୁଏ । କେକ୍ ଉପରେ ମହମବତୀ ଜଳେ । ଯେଉଁ ପିଲାର ଯେତେ ବର୍ଷ ସେତେଟି ମହମବତୀ ଜଳାଯାଏ । ପିଲାର ସାଙ୍ଗ ସାଥିମାନେ ସେହି ଟେବୁଲ ଚାରିପାଖରେ ଠିଆ ହୋଇ "ହେପି ବାର୍ଥ ଡେ ଟୁ ଇଉ" ଗୀତ ଗାଆନ୍ତି । ତାପରେ ସେହି

ପିଲଟି ଫୁଙ୍କି ମହମବତୀକୁ ଲିଭାଏ । ତତ୍‌ପରେ କେକ୍‌ଟି କଟା ହୋଇ ସାଙ୍ଗସାଥି ପିଲାମାନଙ୍କୁ ସେହି କେକ୍ ଖଣ୍ଡିଏ ଖଣ୍ଡିଏ ଖାଇବାକୁ ଦିଆଯାଏ । ସେଥି ସହିତ ବିସ୍କୁଟ୍ ଓ ଅନ୍ୟାନ୍ୟ ମିଠାଇ ମଧ୍ୟ ଦିଆଯାଏ । ଫଳରସ ଆଦି ପାନୀୟ ପିଇବାକୁ ଦିଆଯାଏ । ତାପରେ ଆରମ୍ଭ ହୁଏ ପିଲାମାନଙ୍କର ଟୁଇଷ୍ଟ ନାଚ । ଟୁଇଷ୍ଟ ନାଚ ପରେ ପିଲାମାନେ ବନ୍ଧୁଙ୍କ ଘରୁ ବିଦାୟ ନିଅନ୍ତି । ଏହି ପର୍ବ ଦେଖିବାକୁ ଭାରି ଭଲ ଲାଗେ । ମୁଁ ମୋ ଝିଅ ଓ ପୁଅର ଜନ୍ମଦିନ ଗୋଟିଏ ବର୍ଷ ପାଳିଥିଲି । ପୁଅ ଓ ଝିଅର ବନ୍ଧୁ ସାଙ୍ଗସାଥି ଆସି ଥିଲେ । ସେମାନେ ଏତେ ପ୍ରକାର ଉପହାର ଆଣିଥିଲେ ଯେ ସେ କଥା କହି ହେବନି । କେତେକ ମଧ୍ୟ ଖୁବ୍ ଦାମିକା ଦାମିକା ଉପହାର ଆଣିବାକୁ ଭୁଲି ନ ଥିଲେ । ଆମ ନିମନ୍ତ୍ରଣରେ ମାର୍କିନ୍ ତଥା ଭାରତୀୟ ପରିବାରର ପିଲାମାନେ ଯୋଗ ଦିଅନ୍ତି । ସେମାନଙ୍କ ଟୁଇଷ୍ଟ ନାଚ ଏବେ ସୁଦ୍ଧା ଆମେ ଭୁଲିନୁ । ଯା ବା ଭୁଲି ଯାଇ ପାରନ୍ତୁ, ଆମେ ସେହି ପର୍ବ ଟିକୁ ଆମ ଚଳଚ୍ଚିତ୍ର କେମେରାରେ ଲିପିବଦ୍ଧ କରି ପାରି ଥିବାରୁ ଆମେ ଘରେ କେବେ କେବେ ସିନେମା କରି ସେଗୁଡ଼ାକୁ ଦେଖୁଁ । ଭାରି ଭଲ ଲାଗେ ଓ କେତେ ବର୍ଷ ତଳର ସ୍ମୃତି ଆମ ମନରେ ପୁଣି ଜାଗି ଉଠେ ।

ଆମେରିକାର ପର୍ବପର୍ବାଣୀ ଦେଖି ଆମର ଦୃଢ଼ ଧାରଣା ହୋଇଛି ଯେ ମାର୍କିନ୍ ଗୃହିଣୀମାନେ ପର୍ବପର୍ବାଣୀ ପ୍ରତି ଅତ୍ୟଧିକ ଆଗ୍ରହୀ । ସେମାନଙ୍କର ତ ଆର୍ଥିକ ଅଭାବ ଅନାଟନ ନାହିଁ, କିନ୍ତୁ ଅଧିକ ଅର୍ଥ ବ୍ୟୟ କରି ଆନନ୍ଦ ଉପଭୋଗ ନ କରିବେ ବା କାହିଁକି ? ପୃଥିବୀରେ ତ ଏମିତି ଢେର ଲୋକ ଅଛନ୍ତି, ଯେଉଁମାନେ ନିଜେ ଭୋଜି ଖାଇ ଯେତେ ଆନନ୍ଦ ନ ପାଆନ୍ତି ତା'ଠାରୁ ଅଧିକ ଆନନ୍ଦ ପାଆନ୍ତି, ସାଙ୍ଗସାଥୀମାନଙ୍କୁ ଭୋଜି ଖାଇବାକୁ ଦେଇ । ସେହିଭଳି

ଲୋକଙ୍କ ଭିତରୁ ମାର୍କିନ୍ ଲୋକେ ଯେ ଥୋଡ଼େ, ଏଥିରେ ସନ୍ଦେହ ନାହିଁ । ସେମାନେ ନୂଆ ବନ୍ଧୁଟିଏ ପାଇଲେ, ଆଗ ନିମନ୍ତ୍ରଣ ଘରକୁ ସାନ୍ଧ୍ୟ ଭୋଜନ ପାଇଁ । ଖାଲି ସେତିକ ନୁହେଁ ନିଜ ପଡ଼ୋଶି ଆଉ କେତୋଟି ପରିବାରକୁ ନିମନ୍ତ୍ରଣ କରି ସାନ୍ଧ୍ୟ ଭୋଜନ ବେଳେ ତୁମ ସହିତ ପରିଚିତ କରାଇ ଦେବେ । ଅତିଥିକୁ ଆନନ୍ଦ ଲାଗେ, ଅତିଥି ସତ୍କାରକଙ୍କୁ ବି ଆନନ୍ଦ ଲାଗେ, ତଥା ପଡ଼ୋଶି ଆଉ ଯାଞ୍ଚ ଲୋକଙ୍କୁ ବି । ଆମେରିକାରେ ପହଞ୍ଚିବାର ଅଳ୍ପ କେଇଦିନ ଭିତରେ ଆମେ ଏହିଭଳି କେତୋଟି ନିମନ୍ତ୍ରଣ ପାଇ ମାର୍କିନ୍ ଗୃହିଣୀମାନଙ୍କର ଅତିଥିବତ୍ସଳତାର ଅପୂର୍ବ ଉଦାହରଣ ପାଇଲୁ । ଆମେରିକାରେ ପହଞ୍ଚିବା ପୂର୍ବରୁ ଆମର ଯେଉଁ ଧାରଣା ଥିଲା, ସେମାନେ କାଳେ ଭାରତୀୟଙ୍କୁ ଘୃଣା କରିବେ, ଆମେରିକାରେ ପହଞ୍ଚିବାର ଅଳ୍ପ କେଇ ଦିନ ଭିତରେ ଏହିସବୁ ନିମନ୍ତ୍ରଣରୁ ଆମର ସେସବୁ ଧାରଣା ଦୂର ହେଲା । ଏହିସବୁ ନିମନ୍ତ୍ରଣ, ଭୋଜି, ରନ୍ଧାବଢ଼ାରେ ମାର୍କିନ୍ ଗୃହିଣୀର କର୍ତ୍ତବ୍ୟ, ଗୁରୁତ୍ୱ, କାମ ଅତି ବେଶି । ପୁରୁଷମାନେ ସତେ ଯେମିତି ସାକ୍ଷୀ ଗୋପୀନାଥ ।

—:o:—



ଆମେରିକାର ଏକ ପଲ୍ଲୀ ଅଞ୍ଚଳ

# ଚତୁର୍ଦ୍ଦଶ ଅଧ୍ୟାୟ

# ଆମେରିକାର ଗାଁ ମୋଫସଲ

ଆମେରିକା ଯିବା ପୂର୍ବରୁ ଆମେରିକା କଥା ଶୁଣି ଶୁଣି ଆମର ଧାରଣା ହୋଇ ଯାଇଥିଲା ଯେ ଆମେରିକା ଗୋଟାଏ ଏମିତି ଦେଶ, ଯେଉଁଠି ଆମ ଦେଶଭଳି ଗାଁ ମୋଫସଲ ଅଛି କି ନାହିଁ ସନ୍ଦେହ । ଆମେରିକାରୁ ଯେଉଁମାନେ ବୁଲି ଫେରୁଛନ୍ତି, ସେମାନଙ୍କ ମୁହଁରୁ ଖାଲି ଆମେରିକାର ବଡ଼ ବଡ଼ ସହର ଓ ନଗର ନଗରୀ କଥା । କିଏ କହୁଛି ନିଉୟର୍କର ଶହ ଶହ ତାଲା କୋଠା କଥା ତ, କିଏ କହୁଛି ତ ଚିକାଗୋ, ଫିଲାଡେଲଫିଆର ବଡ଼ ବଡ଼ ଦୋକାନ ବଜାର କଥା । ସେ ସବୁ ଶୁଣି ଶୁଣି ଆମର ଜାଣିକି ଯେ କୌଣସି ଲୋକର ଧାରଣା ହୋଇଯିବ ଆମେରିକା ଖାଲି ସହର, ନଗର ଭରା, ସେ ଦେଶରେ ଗାଁ ଗଣ୍ଡା ମୋଫସଲ ଆଦୌ ଅଛି କି ନାହିଁ ସନ୍ଦେହ ।

ଆମେ ଯିବା ପରେ ଆମର ବହୁ ବନ୍ଧୁ ଆମଠାକୁ ଚିଠି ଲେଖି ଥିଲେ, ଆମେରିକାରେ ଗାଁ ମଫସଲ ଅଛି କି ନାହିଁ ଜାଣିବା ପାଇଁ । ଆମର ମନେ ଅଛି ଆମେ ଯେଉଁ ଦିନ ଭାରତରୁ ଆମେରିକାର ନେୱାର୍କ ଉଡ଼ାଜାହାଜ ଘାଟିରେ ଓହ୍ଲାଇଲୁ ସେ ଦିନ ଆମେ ଉଡ଼ାଜାହାଜ ଘାଟିରୁ—ଆଠ ଦଶ ମାଇଲ ଦୂରରେ ଥିବା ଆମ ବସା ଭବନକୁ ଗଲାବେଳେ ବାଟରେ ଗୋଟାଏ ସହର ପରେ ଆଉ

ଗୋଟାଏ ସହର ପଡ଼ିଲା । କେଉଁଠି ଗାଁ ଗଣ୍ଡାର ଦେଖା ଦର୍ଶନ ମିଳୁନ ଥିଲା । ସେଥିପାଇଁ ଆମର ମଧ୍ୟ ଧାରଣା ହୋଇ ଯାଇଥିଲା ଯେ ଆମେରିକାରେ ଗାଁ ମୋଫସଲ ବୋଧହୁଏ ନାହିଁ, ଖାଲି ସହର ପରେ ସହର ଯେମିତି ଲଗି ଲଗି ରହି ସାରା ଆମେରିକା ଦେଶଟା ତିଆରି ହୋଇଛି । ଯେତେବେଳେ ଆମେରିକାରେ ଭିନ୍ନ ଭିନ୍ନ ସ୍ଥାନ ବୁଲି ଦେଖିଲୁ, ସେତେବେଳେ ଆମର ସେହି ପୁରୁଣା ଧାରଣା ବଦଳିବାକୁ ଲାଗିଲା । ଆମେରିକା ଧନ ଦୌଲତ, ସୁଖ ସମ୍ଭୋଗ ଭରା ହେଲେହେଁ, ଏ ଦେଶରେ ମଧ୍ୟ ଆମ ଦେଶ ଭଳି ଗାଁ ମୋଫସଲ ରହିଅଛି । ଅବଶ୍ୟ ସେମାନଙ୍କ ଗାଁ ମୋଫସଲ ଆମ ଦେଶର ଗାଁ ମୋଫସଲଠାରୁ ଢେର ଅଲଗା ।

ପୃଥିବୀର ସବୁ ବଡ଼ ବଡ଼ ଦେଶରେ ସହର ସଙ୍ଗେ ସଙ୍ଗେ ଗାଁ ମୋଫସଲ ଥାଏ, ରହିବା ମଧ୍ୟ ସ୍ୱାଭାବିକ । କୌଣସି ଦେଶ ଗୋଟା ସାରା ଖାଲି ସହରରେ ଗଢ଼ା ହୋଇ ପାରେ ନା । ଆମେ ଇଂଲଣ୍ଡରେ ଗାଁ ମୋଫସଲ ଦେଖିଛୁ । ସ୍ୱିଜରଲଣ୍ଡ, ଫ୍ରାନ୍ସ, ଇଟାଲୀ ଆଦି ରାଜ୍ୟରେ ଗାଁ ମୋଫସଲ ଅଛି । ଆଉ ଗାଁ ମୋଫସଲ ନ ରହିବ ବା କେମିତି ?

ଆମ ଦେଶରେ ମୋଫସଲ ବୋଇଲେ କଅଣ ବୁଝାଏ ? ଆମ ଦେଶରେ ମଫସଲ ହେଲା ଏମିତି ଗୋଟାଏ ଜନବସତି ଯେଉଁଠାକୁ ଯିବାପାଇଁ ଭଲ ରାସ୍ତାଘାଟ ନାହିଁ । ଲୋକମାନେ କ୍ଷେତ ଉପରେ ହିଁ ନିର୍ଭର କରି ଚଳନ୍ତି । ବଡ଼ ବଡ଼ ସ୍କୁଲ, ଡାକ୍ତରଖାନା, ବଜାର, ଦୋକାନ ଆଦି ନାହିଁ । ସେସବୁ ଜନବସତିରେ ସହରର ଅନ୍ୟ ସୁଖ ସୁବିଧା ଭଲ ଭଲ ରାସ୍ତା, ଗୋଟାଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଯିବାପାଇଁ ଯାନବାହନ, ପ୍ରତ୍ୟେକଙ୍କ ଘରକୁ କଳ-

ଯୋଗାଣ, ବିଦ୍ୟୁତ୍‌ଶକ୍ତି ଯୋଗାଣ ଆଦି ନାହିଁ । ଲୋକମାନେ ନାନା ଅସ୍ୱାସ୍ଥ୍ୟକର ପରିସ୍ଥିତି ଭିତରେ ଜୀବନ କଟାନ୍ତି । ଆମ ଦେଶରେ ମୋଫସଲ ବୋଇଲେ ଯଦି ଉପରେ କୁହା ହେଉଥିବା ଜନବସତିକୁ ବୁଝାଏ, ତେବେ ସେ ଭଳି ଜନବସତି ଆମେରିକାରେ ନାହିଁ । ଆମେରିକାରେ ଯାହାକୁ ମୋଫସଲ କହନ୍ତି, ସେ ଆମ ଦେଶର ମଫସଲଠାରୁ ଅନେକ ଗୁଣରେ ଅଲଗା ।

ଆମ ଦେଶର ଗାଁ ମୋଫସଲ ଅଧିବାସୀଙ୍କର କୃଷି ଯେମିତି ପ୍ରଧାନ ସମ୍ବଳ, ଆମେରିକାରେ ଯେଉଁ ଗାଁ ମଫସଲ ଅଛି, ସେଠାକାର ଅଧିବାସୀମାନଙ୍କର କୃଷି ସେହିଭଳି ପ୍ରଧାନ ସମ୍ବଳ । ଆମେରିକାରେ ଯେଉଁମାନେ ଚାଷ କରନ୍ତି, ସେମାନେ ଆମ ଦେଶ ଲୋକଙ୍କ ଭଳି ମାଣେ ଦିମାଣ ଜମି ଚାଷକରି ଚାଷୀ ହୋଇନ୍ତି ନାହିଁ । ସେମାନେ ଚାଷ କରିବେ ତ ୫୦୦ ଏକର କି ହଜାରେ ଏକର ନେଇ ଚାଷ କରିବେ । ସେହିଭଳି ଚାଷୀ ପନ୍ଦର କୋଡିଏ ଜଣ ମିଶି ଯଦି ଏକାଠି ରହିଲେ, ତେବେ ସେ ଗୋଟାଏ ଗ୍ରେଟ ଜନବସତି ହେଲା । ସେଠି ରହିଲେ ଚାଷୀ ଓ ସେମାନଙ୍କ ସାହାଯ୍ୟକାରୀ ମୂଲିଆ ଓ କର୍ମଚାରୀମାନେ । ସେହି ଜନବସତି ଚାରି ପାଖରେ ରହିଲା ହଜାର ହଜାର ଏକର ଚାଷଜମି । ଠାଏ ଠାଏ ଆହୁରି ବଡ଼ ଜନବସତି ମଧ୍ୟ ହୋଇପାରେ । ଏହି ଜନବସତିଗୁଡ଼ିକ ସହରଠାରୁ ଅଲଗା । ଏଗୁଡ଼ିକୁ ସେମାନଙ୍କ ଭାଷାରେ ମୋଫସଲ କୁହାଯାଏ । ଏଗୁଡ଼ା ମୋଫସଲ ହେଲେ ମଧ୍ୟ ଏମାନଙ୍କ ଜନବସତିକୁ ସହରର ରାସ୍ତାଭଳି ବଡ଼ ବଡ଼ ରାସ୍ତା ଯାଇଛି । ସହର ଘରଗୁଡ଼ିକ ଯେଉଁ ଗୁଣରେ ତିଆରି ଏ ଘରଗୁଡ଼ିକ ଠିକ୍ ସେହି ଗୁଣରେ ତିଆରି । ସହରର ଘରକୁ ଯେମିତି ପାଣି ପାଇପ୍, ଗ୍ୟାସପାଇପ୍ ବିଦ୍ୟୁତ୍‌ଶକ୍ତି ଆଦି ଯୋଗାଇ ଦିଆଯାଇଛି, ସେହିଭଳି ଏହି ଘରଗୁଡ଼ିକୁ ସବୁ

ଯୋଗାଇ ଦିଆଯାଇଛି । ଆମେରିକାରେ ଏମିତି ଘରନାହିଁ, ଯେଉଁଠାକୁ ପାଣି ପାଇପ୍ କି ବିଜୁଳି ଆଲୁଅ ଯାଇନି । ସେ ଘର ସହରରେ ହେଉ ବା ମୋଫସଲରେ ହେଉ, ସବୁ ଘରକୁ ସେ ସବୁ ଯାଇଥିବ । ଗାଁ ମୋଫସଲ ହେଲେ ମଧ୍ୟ ପ୍ରତ୍ୟେକଙ୍କ ଘରେ କାର୍ ଆଦି ରହିଛି । ବଡ଼ ବଡ଼ କୃଷି କ୍ଷେତକଡ଼ରେ ଥିବା ଏହିସବୁ ଛୋଟ ଛୋଟ ଗାଁ ଗଣ୍ଡା ଜନବସତିଗୁଡ଼ିକ ସହରଠାରୁ ବିଶେଷ ଦୂରରେ ନୁହେଁ । ସହର ବା ଅନ୍ୟ ସ୍ଥାନକୁ ଯିବାପାଇଁ ସେହିସବୁ ଜନବସତି ଦେଇ ରେଳ ବା ବସ୍ ଲାଇନ୍ ଯାଇଅଛି । ସେହିସବୁ ଜନବସତିରେ ପିଲାଙ୍କ ପଢ଼ିବା ପାଇଁ ଛୋଟ ଛୋଟ ସ୍କୁଲ୍ ଥିଲେହେଁ ବଡ଼ ବଡ଼ ସ୍କୁଲ୍ ନାହିଁ । ତେଣୁ ଉପରକୁ ପଢ଼ିବା ପାଇଁ ସେମାନଙ୍କ ପିଲାମାନଙ୍କୁ ନିକଟସ୍ଥ ସହରକୁ ଯିବାକୁ ପଡ଼େ । କେବଳ ଆରାମ ହେଲେ ଡାକ୍ତରଖାନା ପାଇଁ ସହରକୁ ଯିବାକୁ ପଡ଼େ । ଅବଶ୍ୟ ସହରଗୁଡ଼ିକ ବେଶି ଦୂରରେ ନ ଥାଏ । ଆଠ ଦଶ ମାଇଲରେ ଗୋଟାଏ ଗୋଟାଏ ଛୋଟ ବଡ଼ ସହର । ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ଖରିଦ ପାଇଁ ସେହିସବୁ ଜନବସତିରେ ଦୋକାନ ଥିଲେହେଁ ସଉଖୀନ ବା ବଡ଼ ବଡ଼ ଜିନିଷ ଖରିଦ ପାଇଁ ସହରକୁ ଯିବା ଦରକାର ପଡ଼େ । ଥିଏଟର, ସିନେମା ଆଦିର ସୁବିଧା ସହରରେ ଥିବାରୁ ସେସବୁ ପାଇଁ ସହରକୁ ଯିବା ଛଡ଼ା ଅନ୍ୟ ଉପାୟ ନାହିଁ । ଅବଶ୍ୟ ସହରକୁ ଯିବା ବେଶି କିଛି କଷ୍ଟକର ନୁହେଁ । କାରଣ ପ୍ରତ୍ୟେକଙ୍କର ମୋଟରଗାଡ଼ି ଅଛି । ମନକଲେ ତ ସହରକୁ ଯାଇ ଜିନିଷପତ୍ର କିଣି ଫେରି ଆସିବାକୁ ଘଣ୍ଟାଏ ଦି' ଘଣ୍ଟାରୁ ଅଧିକ ସମୟ ଲାଗିବ ନାହିଁ । ସହର ଭଳି ଜନବହୁଳ, ଯାନବାହାନ ଚଳାଚଳ, କଳକାରଖାନାର ନାନାଦି ଅପ୍ରୀତିକର ଶବ୍ଦ ଏଠାରେ ନ ଥିବାରୁ ଓ ପ୍ରକୃତିର ଚିରନ୍ତନ ସୌନ୍ଦର୍ଯ୍ୟ

ସ୍କୁଲଆଡ଼େ ଖେଳାଇ ହୋଇ ରହୁଥିବାରୁ ବହୁ ଲୋକ ଏହିଭଳି ସ୍ଥାନରେ ରହିବାକୁ ଭଲ ପାଆନ୍ତି । ଏମିତି କି ବଡ଼ ବଡ଼ ସହରରେ କାମ କରୁଥିବା ବହୁ ଲୋକ ସହରରେ ନ ରହି ସହରଠାରୁ ବହୁ ଦୂରରେ ଏହିଭଳି ଗ୍ରାମାଞ୍ଚଳରେ ରହିବାକୁ ଭଲପାଆନ୍ତି । ପ୍ରତିଦିନ ସକାଳୁ ନିଜ କାରରେ ସହରରେ ଥିବା କାର୍ଯ୍ୟ ସ୍ଥଳକୁ ଯାଆନ୍ତି ଓ ସନ୍ଧ୍ୟାବେଳକୁ ଫେରି ଆସନ୍ତି । ଏମିତି ବି ଲୋକ ଅଛନ୍ତି, ଯେଉଁମାନେ ସେମାନଙ୍କ କାର୍ଯ୍ୟସ୍ଥଳୀଠାରୁ ୪୦।୫୦ ମାଇଲ ଦୂରରେ ବାସ କରନ୍ତି ଓ ପ୍ରତିଦିନ ସେମାନଙ୍କ ବାସସ୍ଥାନଠାରୁ କାର୍ଯ୍ୟସ୍ଥଳୀକୁ ନିଜ ଗାଡ଼ିରେ ଯିବାଆସିବା କରନ୍ତି । ମୋଫସଲରେ ରହିଲେ ମଧ୍ୟ ଏସବୁ ଲୋକଙ୍କର ଚାଲିଚଳଣି ପ୍ରାୟ ସହର ଅଧିବାସୀଙ୍କ ଭଳି । ଏମାନଙ୍କ ଘରର ସାଜସଜ୍ଜାରେ କିଛି ପାର୍ଥକ୍ୟ ନାହିଁ । ସହରର ଲୋକଙ୍କ ଘରେ ଯେମିତି ରେଡ଼ିଓ, ଟେଲିଭିଜନ, ରେଫ୍ରିଜେରେଟର, ଓ୍ୱାସିଙ୍ଗ ମେସିନ, ଡ୍ରାଇଁ ମେସିନ ଆଦି ସାଜସରଞ୍ଜାମ ରହିଛି । ଏଠାକାର ଲୋକଙ୍କର ଠିକ୍ ସେମିତି, ଏମାନଙ୍କ ପୋଷାକପତ୍ର ମଧ୍ୟ ସହରବାସୀଙ୍କ ଭଳି । ମଫସଲରେ ରହିଲେ କଣ ହେବ, ସେମାନଙ୍କର ସହର ସହିତ ସବୁବେଳେ ସମ୍ପର୍କ ଥାଏ । କେତେକ ଲୋକ ମତ ପ୍ରକାଶ କରନ୍ତି, ଯେ ଗ୍ରାମାଞ୍ଚଳରେ ରହିଲେ ସ୍ୱାସ୍ଥ୍ୟ ପକ୍ଷରେ ଭଲ । ପିଲାପିଲିଙ୍କ ଖେଳିବା ପାଇଁ ପ୍ରଶସ୍ତ ସୁବିଧା ମିଳେ, ଗ୍ରାମାଞ୍ଚଳର ବାୟୁ ସହର ବାୟୁ ଭଳି ଦୂଷିତ ନୁହେଁ । ପ୍ରାକୃତିକ ସୌନ୍ଦର୍ଯ୍ୟ ଭିତରେ ରହିଲେ ମନ ଓ ସ୍ୱାସ୍ଥ୍ୟ ଭଲ ରହେ । କେବଳ ମାତ୍ର ତଫାତ୍ ହେଲା ସହରକୁ ଆସିବାକୁ ହେଲେ ଗାଡ଼ି ଚଳାଇବା ପରିଶ୍ରମ ଟିକିଏ ଅଧିକ । ଆମେରିକାର କି ଗାଁ । କି ମଫସଲ କେଉଁଠି ତ ଆମ ଦେଶ ଭଳି କଲେରା, ବସନ୍ତ, ମେଲେରିଆ, ଅମାଶୟ ଆଦି ରୋଗ ନାହିଁ । ତେଣୁ

ମୋଫସଲରେ ରହିବା ପାଇଁ ତାଙ୍କ ଦେଶର ଲୋକ ଆମ ଦେଶ ଲୋକଙ୍କ ଭଳି ଭୟ କରନ୍ତେ କାହିଁକି ? ଅବଶ୍ୟ ଯୁକ୍ତରାଷ୍ଟ୍ରର ଦକ୍ଷିଣାଞ୍ଚଳରେ ଥିବା ଗ୍ରାମଗୁଡ଼ିକ ଉତ୍ତରାଞ୍ଚଳର ଗ୍ରାମଭଳି ସେତେ ଉନ୍ନତ ନୁହେଁ । ହେଲେ ସେଗୁଡ଼ିକ ଯେ ଅନୁନ୍ନତ ତା କୁହାଯାଇ ପାରିବ କି ?



## ପଞ୍ଚଦଶ ଅଧ୍ୟାୟ

# ପୃଥିବୀର ସବୁ ବଡ଼ଯାକ ଆମେରିକାରେ

ଆମେରିକାରେ ଆମେ ରହିବାର ପ୍ରାୟ ସାତ ଆଠ ମାସ ପରେ ଆମର ନିଉୟର୍କ ବୁଲିଯିବାର ଏକ ପ୍ରୋଗ୍ରାମ ହେଲା । ଆମେ ଏତେ ଦିନ କାଳ ଆମେରିକାରେ ଆସି ରହି ପାଖ ଆଖ ବହୁ ସହର ଓ ବଡ଼ ବଡ଼ ଗ୍ରାମ ଜାତୀୟ ଉଦ୍ୟାନ ଆଦି ଦେଖା, ଦେଖିକରି ସାରିଥିଲେ ହେଁ ବୋଷ୍ଟନଠାରୁ ବଡ଼ ସହର ଦେଖିବାର ସୁଯୋଗ ଜୁଟି ନ ଥିଲା । ତେଣୁ ଆମର ଭାରି ଇଚ୍ଛା ଥାଏ, କେମିତି ନିଉୟର୍କ ଆଡ଼େ ପ୍ରୋଗ୍ରାମଟାଏ ହେବ । ଡକ୍ଟର ମହାପାତ୍ର ତାଙ୍କ ଗବେଷଣାରେ ଲାଗି ଯାଇଥିବାରୁ ପ୍ରଥମ ଛମାସ ସେ ବାହାରକୁ ଯିବାର ପ୍ରୋଗ୍ରାମ କରୁ ନ ଥାନ୍ତି । ଏଣେ ମୁଁ ଓ ପିଲାମାନେ ସେ ଦେଶର ଭାଷା ଶିଖିବାରେ ଲାଗି ପଡ଼ିଥାଉଁ । ତେଣୁ ପ୍ରଥମ ଛମାସ ପାଇଁ ଆମେ କୌଣସି ପ୍ରୋଗ୍ରାମ ନ ରଖିବା ହିଁ ସ୍ୱାଭାବିକ । ଆମେରିକାରେ ପହଞ୍ଚିବାର ଆଠ ନଅ ମାସ ପରେ ବାହାରକୁ ଯିବାର ଏକ ପ୍ରୋଗ୍ରାମ କରିବାକୁ ପଡ଼ିଲା । ଯେଉଁଦିନ ଡକ୍ଟର ମହାପାତ୍ର ଆମର ନିଉୟର୍କ ଯିବା ପ୍ରୋଗ୍ରାମ କାଢ଼ିଲେ, ସେଦିନ ଆମ ଖୁସି କହିଲେ ନ ସରେ । ଆମେ ସମସ୍ତେ ଆମ ଡିନର ଟେବୁଲ ଉପରେ ବସି ସନ୍ଧ୍ୟା ଭୋଜନ କରୁଥାଉଁ । ପ୍ରୋଗ୍ରାମ ଶୁଣି ପିଲାମାନଙ୍କ ଖୁସି କହିଲେ ନ ସରେ । ମୋ ମନ ମଧ୍ୟ ଆନନ୍ଦରେ ସେଥି ସହିତ ନାଚିଗଲା । ନିଉୟର୍କରେ ଆମେ କେଉଁଠି କେତେ ଦିନ ରହିବୁଁ ଓ ନିଉୟର୍କରେ କଣ ସବୁ ଦେଖିବା ଦରକାର, ସେସବୁ କଥା ଆଲୋଚନା କରୁ କରୁ ଆମର ଡେର ରାତି ହୋଇଗଲା ।

ମୋ ଧାରଣା ନ ଥିଲା ପୃଥିବୀର ବହୁ ବଡ଼ ବଡ଼ 'ଦର୍ଶନୀୟ ଜିନିଷ ନିଉୟର୍କରେ ଅଛି ।

ଆମେରିକାର ବୃହତ୍ତମ ନଗରୀ ହେଲା ନିଉୟର୍କ । ଏହି ସହରଟି ପୃଥିବୀର ବୃହତ୍ତମ ନଗରୀ ଭାବରେ କିଛିଦିନ ଗଣିତ ହୋଇ ଥିଲା । ବୃହତ୍ତମ ନଗରୀ ଭାବରେ ଲଣ୍ଡନ ଖ୍ୟାତି କମିଯିବା ପରେ, ସେହି ସୌଭାଗ୍ୟ ଜୁଟିଲା ନିଉୟର୍କ ନଗରୀ କପାଳରେ । କିନ୍ତୁ ନିଉୟର୍କ ନଗରୀର ସେହି ସୌଭାଗ୍ୟ ବେଶୀ ଦିନ ରହି ପାରିଲାନି । ଜାପାନର ରାଜଧାନୀ ଟୋକିଓ ପୃଥିବୀର ବୃହତ୍ତମ ନଗରୀର ସୌଭାଗ୍ୟ ଅର୍ଜନ କଲା ପରଠାରୁ ନିଉୟର୍କର ସେହି ସୌଭାଗ୍ୟ ଆଉ ରହିଲା ନି । ପୃଥିବୀର ବୃହତ୍ତମ ନଗରୀର ସୌଭାଗ୍ୟ ନ ଥିଲେ ହେଁ ପୃଥିବୀର ସବୁଠାରୁ ଧନଶାଳୀ ନଗରର ସୁଖ୍ୟାତି ନିଉୟର୍କର ସବୁଦିନେ ରହିଥିବ । ପୃଥିବୀର କୌଣସି ଦେଶ ପକ୍ଷରେ ନିଉୟର୍କର ସେହି ସୌଭାଗ୍ୟକୁ ଛଡ଼ାଇ ନେବା ସେତେ ସହଜ ନୁହେଁ । ପୃଥିବୀର ଯେତେ ସହରରେ ଯେତେ କୋଟିପତି ଅଛନ୍ତି, ସମସ୍ତଙ୍କ ଠାରୁ ବେଶି ସଂଖ୍ୟକ ଅଛନ୍ତି ଏହି ନିଉୟର୍କରେ । ପୃଥିବୀର ସବୁଠାରୁ ବଡ଼ ବଡ଼ ବ୍ୟବସାୟୀଙ୍କ ଅଫିସ ଓ ପ୍ରଧାନ କାର୍ଯ୍ୟ କେନ୍ଦ୍ର ହେଉଛି ନିଉୟର୍କ । ନିଉୟର୍କ କରପୋରେସନ୍ ହେଉଛି ପୃଥିବୀର ସବୁଠାରୁ ଧନଶାଳୀ କରପୋରେସନ୍ । ପୃଥିବୀର କୌଣସି କରପୋରେସନ ବା ମ୍ୟୁନିସିପାଲଟିର ଆୟ ନିଉୟର୍କ କରପୋରେସନ୍‌ର ଆୟ ସହିତ ସମାନ ନୁହେଁ । ଏହି ଆୟ ଆମ ଭାରତ ସରକାରଙ୍କ ଆୟଠାରୁ ବେଶୀ । ତା' ଛଡ଼ା ପୃଥିବୀର ଉଚ୍ଚତମ ପ୍ରାସାଦ ଓ ସବୁଠାରୁ ଅଧିକ ତାଲା ଥିବା ପ୍ରାସାଦ ଏମ୍ପାୟାର ଷ୍ଟେଟ ବିଲଡ଼ିଂ ନିଉୟର୍କରେ । ଏହି ପ୍ରାସାଦ ହେଲା ୧୦୨ ତାଲା । ପୃଥିବୀରେ ଆଉ କେଉଁଠି ଏତେ

ଛାତ ଥିବା ପ୍ରାସାଦ ନାହିଁ । ଏମ୍ପାୟାର ଷ୍ଟେଟ୍‌ବିଲ୍‌ଡିଂର ଗୌରବ ମଧ୍ୟ ଆଉ ଅଧିକ ଦିନ ରହିବନି । ଏମ୍ପାୟାର ଷ୍ଟେଟ ବିଲଡ଼ିଂ ଠାରୁ ଅଧିକ ଉଚ୍ଚ ଦୁଇଟି ଯାଆଁଳା ପ୍ରାସାଦ ଏବେ ନିଉୟର୍କ ନଗରୀର ମାନହଟନ ଦ୍ୱୀପର ପଶ୍ଚିମ ପାର୍ଶ୍ୱରେ ତିଆରି ହେବାକୁଯାଉଛି । ଏମ୍ପାୟାର ଷ୍ଟେଟ ବିଲଡ଼ିଂର ଉଚ୍ଚତା ଠାରୁ ଏଗୁଡ଼ିକର ଉଚ୍ଚତା ବଢିଯିବ । ଏମ୍ପାୟାର ଷ୍ଟେଟ ବିଲଡ଼ିଂର ଉଚ୍ଚତା ୧୨୫୦ ଫୁଟଥିବା ସ୍ଥଳେ ଏ ଦୁଇଟି ପ୍ରାସାଦର ଉଚ୍ଚତ ହେବ ୧୩୫୦ ଫୁଟ ଲେଖାଏଁ । ୧୯୬୮ ମସିହା ସୁଦ୍ଧା ଏଥି ମଧ୍ୟରୁ ଗୋଟିକର କାମଶେଷ ହୋଇଯିବାର ଆଶା । ତେଣୁ ଏହି ମସିହାଟି ଏମ୍ପାୟାର ଷ୍ଟେଟ ବିଲଡିଂର ଇତିହାସର ଏକ ଖରାପ ଦିନ । ସେହି ଦିନ ଏହାର ପ୍ରକୃତ ଗର୍ବ ଖର୍ବ ହେବ ।

ପୃଥିବୀର ବୃହତ୍ତମ ଝୁଲା ପୋଲ ହେଲା ସାନ୍‌ଫ୍ରାନସିସ୍‌କୋରେ ଥିବା ଗୋଲଡନ୍ ଗେଟ୍ ବ୍ରିଜ । ଗୋଲଡନ୍ ଗେଟ୍‌ବ୍ରିଜ୍‌ର ସେହି ଖ୍ୟାତି ଆଉ ଅଧିକ ଦିନ ରହିବନି । ପୃଥିବୀର ବୃହତ୍ତମ ଝୁଲା ପୋଲ ଭେରାଜାନେ ନେରୋଜ୍ ବର୍ତ୍ତମାନ ତିଆରି ହୋଇଛି ନିଉୟର୍କ ଉପସାଗର ଉପରେ ଏହି ପୋଲଟି କୌଣସି ନଦୀ ଉପରେ ନୁହେଁ । ଏହା ହୋଇଛି ସମୁଦ୍ର ଉପରେ । ନିଉୟର୍କ ଉପସାଗରରେ ଥିବା ଷ୍ଟାଟେନ୍ ଆଇ-ଲାଣ୍ଡକୁ ବ୍ରୁକ୍‌ଲିନ୍ ଦ୍ୱୀପ ସହିତ ସଂଯୋଗ କରିବ ଏହି ପୋଲଟି । ୧୯୬୭ ମସିହାରେ ଏହି ପୋଲର କାର୍ଯ୍ୟ ସରିବ । ଷ୍ଟାଟେନ୍‌ଦ୍ୱୀପ ସହିତ ବ୍ରୁକ୍‌ଲିନ୍ ଦ୍ୱୀପ ସିଧା ସଳଖ ସଂଯୁକ୍ତ ହେବ । ଏହି ପୋଲ ହେବ ପୃଥିବୀର ବୃହତ୍ତମ ଝୁଲା ପୋଲ । ଏହି ପୋଲଟି ଏତେ ଉଚ୍ଚ ହେବ ଯେ ଏହା ତଳଦେଇ ପୃଥିବୀର ବୃହତ୍ତମ ଜାହାଜ, କୁଇନ ଏଲିଜାବେଥ ଓ କୁଇନ୍ ମେରୀ ଯିବାଆସିବା କରିପାରିବେ ।

ନିଉୟର୍କରେ ଅଧିକ ସଂଖ୍ୟକ ବହୁ ତାଲାଥିବା ପ୍ରାସାଦ Sky Scraper ଅଛି । ପୃଥିବୀର ବିଭିନ୍ନ ସହରରେ ୪୦।୫୦ ତାଲା-ପ୍ରାସାଦ ଥିବାସ୍ଥଳେ ନିଉୟର୍କ ନଗରୀରେ ୬୦।୭୦।୮୦ ତାଲା ଥିବା କୋଠା ସଂଖ୍ୟା ବେଶୀ । ତେଣୁ ନିଉୟର୍କ ନଗରୀର ଅନ୍ୟନାମ ହେଲା ଆକାଶ ଛୁଆଁ ପ୍ରାସାଦର ନଗରୀ । ଏହାକୁ ଛାଡ଼ି ପୃଥିବୀର ବୃହତ୍ତମ ଅଫିସ ପ୍ରାସାଦ ନିଉୟର୍କ ନଗରୀରେ, ଏହାର ନାମ ହେଉଛି ପାନାମ୍ ପ୍ରାସାଦ । ଏହା ୫୦ ତାଲା ବିଶିଷ୍ଟ । ପୃଥିବୀର କୌଣସି ବ୍ୟବସାୟୀ ଅଫିସ ଏତେ ବଡ଼ ନୁହେଁ । ପୃଥିବୀର ବୃହତ୍ତମ ରେଳ ଷ୍ଟେସନ ଗ୍ରେଣ୍ଡ ସେଣ୍ଟ୍ରାଲ ଟାରମିନସ୍ ନିଉୟର୍କ ନଗରୀରେ । ପୃଥିବୀର ବୃହତ୍ତମ ଦୋକାନ 'ମାସେ ଡ଼ିପାର୍ଟମେଣ୍ଟାଲ ଷ୍ଟୋର' ନିଉୟର୍କ ନଗରୀରେ । ପୃଥିବୀର ଉଚ୍ଚତମ ପ୍ରାସାଦ ଏମ୍ ପାୟାର ଷ୍ଟେଟ୍ ବିଲଡ଼ିଂଠାରୁ ଅଳ୍ପ ଦୂରରେ । ପୃଥିବୀର ବୃହତ୍ତମ ଖବରକାଗଜ ନିଉୟର୍କ ଟାଇମ୍ସ୍ ଓ ନିଉୟର୍କ ଡେଇଲ୍ ଟ୍ରିବ୍ୟୁନ୍ ନିଉୟର୍କରୁ ପ୍ରକାଶିତ ହୁଏ । ପୃଥିବୀର ବୃହତ୍ତମ ବସ୍ ଷ୍ଟେସନ୍ ପୋର୍ଟ ଅଥରିଟି ପ୍ରାସାଦରେ ଅବସ୍ଥିତ । ପୃଥିବୀର ବୃହତ୍ତମ ଉଡ଼ାଜାହାଜ କୋମ୍ପାନୀ ପାନ୍ ଆମେରିକାନ୍ ଓ ଟି. ଡବ୍ଲିଉ. ଏର ହେଡ଼ ଅଫିସ ହେଲା ନିଉୟର୍କ । ପୃଥିବୀର ବୃହତ୍ତମ ଟେଲିଭିଜନ୍ କୋମ୍ପାନୀ ଏନ୍. ବି. ସି. ନିଉୟର୍କ ନଗରୀର । ପୃଥିବୀର ଉଚ୍ଚତମ ଏଣ୍ଟିନା ନିଉୟର୍କ ଏମ୍ପାୟାର ଷ୍ଟେଟ୍ ବିଲଡିଂ ଉପରେ ଅବସ୍ଥିତ । ଖାଲି ସେତିକି ନୁହେଁ ଏହି ଏଣ୍ଟିନା ହେଉଛି ପୃଥିବୀର ସବୁଠାରୁ ଶକ୍ତିଶାଳୀ ଏଣ୍ଟିନା । ସମୁଦ୍ରର ଜାହାଜଗୁଡ଼ିକୁ ରାତିରେ ଆଲୋକ ଦେଖାଇ ବନ୍ଦରକୁ ଆଣିବାକୁ ଯେତେ ଆଲୋକବର୍ତ୍ତୀ ପୃଥିବୀର ବିଭିନ୍ନ ସ୍ଥାନରେ ଅଛି, ସବୁଠାରୁ ଶକ୍ତିଶାଳୀ ଆଲୋକବର୍ତ୍ତୀ ହେଉଛି ଏମ୍ପାୟାର ଷ୍ଟେଟ୍ ବିଲଡ଼ିଂ ଉପରେ ଥିବା 'ଫ୍ରିଡମ୍

ନାଇଟ୍' । ଏହାର ଆନେକ ଶହ ମାଇଲ ସମୁଦ୍ର ଭିତରକୁ ବିସ୍ତୃତ । ପୃଥିବୀର ବୃହତ୍ତମ ଟେଲିଭିଜନ୍ ଷ୍ଟେସନ ହେଉଛି ନ୍ୟାସନାଲ ବ୍ରଡ଼କାଷ୍ଟିଂ କୋମ୍ପାନୀର । ଏହା ନିଉୟର୍କ ନଗରୀରେ ଅବସ୍ଥିତ । ନିଉୟର୍କ ନଗରୀରେ ଯେତେ ଟେଲିଭିଜନ୍ ଷ୍ଟେସନ ଅଛି, ପୃଥିବୀର ଅନ୍ୟ କୌଣସି ସହରରେ ଏତେ ନାହିଁ । ବ୍ୟକ୍ତି ବିଶେଷଙ୍କ ଅଧିକାରରେ ଥିବା ଓ ମାଲିକାନାରେ ଥିବା ପୃଥିବୀର ବୃହତ୍ତମ ପ୍ରାସାଦ ସମୂହ ହେଉଛି ରକେଫେଲର ସେଣ୍ଟର । ଏହା ନିଉୟର୍କ ନଗରୀରେ ଅବସ୍ଥିତ । ପୃଥିବୀର ସବୁଠାରୁ ବେଗଗାମୀ ଲିଫ୍ଟ ଲାଗିଛି ରକେଫେଲର ସେଣ୍ଟରର ଆର୍.ସି.ଏ. ପ୍ରାସାଦରେ । ଏହି ଲିଫ୍ଟ ଯେତେ ବେଗରେ ଯାଏ, ପୃଥିବୀର ଅନ୍ୟ କୌଣସି ସ୍ଥାନର ଲିଫ୍ଟ ଏତେ ବେଗରେ ଯାଏ ନାହିଁ ।

ପୃଥିବୀର ବୃହତ୍ତମ ଝରକା ନଥିବା କଂକ୍ରିଟ୍ ଟାଓ୍ୱାର ପ୍ରାସାଦ ବେଲ୍ ଟେଲିଫୋନ୍ ପ୍ରାସାଦ ନିଉୟର୍କ ନଗରୀରେ ଅବସ୍ଥିତ । ପୃଥିବୀର ବୃହତ୍ତମ ଇସ୍ପାତ ଟାଓ୍ୱାର ଗମ୍ବୁଜ ଥିବା ହେରେଲ୍ଡ ହଡ଼ସନ୍ ପୋଲ, ନିଉୟର୍କରେ ଅବସ୍ଥିତ ।

ପୃଥିବୀର ବୃହତ୍ତମ ଓ ଉଚ୍ଚତମ ହୋଟେଲ ହେଲା, ହୋଟେଲ ଆମେରିକାନା । ଏହା ୫୦ ତାଲା ବିଶିଷ୍ଟ । ଏହା ନିଉୟର୍କ ନଗରୀରେ ଅବସ୍ଥିତ । ପୃଥିବୀର ଅନ୍ୟ ବୃହତ୍ତମ ହୋଟେଲ ହେଉଛି, "ଓ୍ୱାଲଡର୍ଫ ଏଷ୍ଟୋରିଆ ହୋଟେଲ ।" ଏହା ମଧ୍ୟ ନିଉୟର୍କ ନଗରୀରେ ଅବସ୍ଥିତ । ଏହା ୪୭ ତାଲା ବିଶିଷ୍ଟ । ପୃଥିବୀର ବୃହତ୍ତମ ସିନେମାହଲ, "ରେଡ଼ିଓ ସିଟି ମିଉଜିକ୍ ହଲ୍ " ନିଉୟର୍କ ନଗରୀରେ ଅବସ୍ଥିତ । ଏଥିରେ ଏକକାଳୀନ ୬୨୦୦ ଦର୍ଶକ ବସି ସିନେମା ଦେଖିବାର ସୁବିଧା

ଅଛି । ଏହି ସିନେମା ଘରଟି କୋଡ଼ିଏତାଲା କୋଠାଠାରୁ ଅଧିକ ଉଚ୍ଚ । ସେଥିପାଇଁ ମଧ୍ୟ ଏହା ପୃଥିବୀର ଉଚ୍ଚତମ ସିନେମା ଘର ।

ପୃଥିବୀର ବୃହତ୍ତମ ଜାହାଜ "କୁଇନ୍ ଏଲିଜାବେଥ୍ ନିଉୟର୍କ ନଗରୀକୁ ଯା' ଆସ କରେ । ପୃଥିବୀର ବୃହତ୍ତମ ପୁସ୍ତକ ପ୍ରକାଶକ "ଡବଲ୍ ଡେ" ନିଉୟର୍କ ନଗରୀରେ ଅବସ୍ଥିତ । ପୃଥିବୀର ବୃହତ୍ତମ ଛାପାଖାନା ନିଉୟର୍କରେ ଅବସ୍ଥିତ । ପୃଥିବୀର ବିଭିନ୍ନ ସହରରେ ଯେତେ ଛାପାଛପି କାମ ହୁଏ, ସବୁଠାରୁ ବେଶି ହୁଏ ନିଉୟର୍କରେ । ସାରା ଆମେରିକାରେ ଯେତେ ଛାପାଛପି ହୁଏ, ତହିଁର ଅଧିକରୁ ବେଶି କେବଳ ଏହି ନିଉୟର୍କ ନଗରୀରେ ହୁଏ । ନିଉୟର୍କ ନଗରୀରେ ଯେତେ ସଂଖ୍ୟକ କଳକାରଖାନା ରହିଛି, ସେତେ ସଂଖ୍ୟକ କଳକାରଖାନା ଆଉ କେଉଁ ସହରରେ ନାହିଁ । ପୃଥିବୀର ସବୁଠାରୁ ଅଧିକ କାର୍ଯ୍ୟବ୍ୟସ୍ତ ବନ୍ଦର ହେଉଛି ନିଉୟର୍କ ବନ୍ଦର । ପୃଥିବୀର ବୃହତ୍ତମ ସେଆର ମାର୍କେଟ୍ ଓ ଷ୍ଟକ୍ ଏକସ୍‌ଚେଞ୍ଜ ହେଉଛି ନିଉୟର୍କ ନଗରୀର ଓ୍ୱାଲ୍ ଷ୍ଟ୍ରୀଟ୍‌ରେ । ଏ ଦୁଇଟି ହେଲା ନିଉୟର୍କ ଷ୍ଟକ୍ ଏକସଚେଞ୍ଜ ଓ, ଆମେରିକାନ୍ ଷ୍ଟକ୍ ଏକସ୍‌ଚେଞ୍ଜ । ପୃଥିବୀର ବୃହତ୍ତମ ବେଙ୍କ ଫେଡ଼େରାଲ ରିଜର୍ଭ ବେଙ୍କ ଅଫ୍ ଆମେରିକା ନିଉୟର୍କ ନଗରୀରେ ଅବସ୍ଥିତ । ପୃଥିବୀର ବୃହତ୍ତମ ମୂର୍ତ୍ତି ଷ୍ଟାଚ୍ୟୁ ଅଫ୍ ଲିବର୍ଟି ନିଉୟର୍କ ଉପସାଗରରେ ଅବସ୍ଥିତ ।

ଉତ୍କଳର ମହାପାତ୍ର ଯେତେବେଳେ ପୃଥିବୀର ସବୁ ବଡ଼ପଣକୁ କହି ଯାଉଥିଲେ ଓ ସେଗୁଡ଼ାକ ସବୁ ନିଉୟର୍କରେ ଶୁଣିଲାବେଳୁଁ ମନ ଉଚ୍ଛନ୍ନ ନ ହୋଇ ରହି ପାରିଲା ନି । କେମିତି ଶୀଘ୍ର ଆମେ ନିଉୟର୍କ ପରିଦର୍ଶନରେ ଯିବୁଁ ସେଇ ଚିନ୍ତା ମନଭିତରେ ଖେଳୁଥାଏ । ନିଉୟର୍କର ସବୁ ବଡ଼ପଣକ କଥା ଶୁଣୁଶୁଣୁ ଦିନ ଏ

ପଚ୍ଚରିଲେ, ଆମେରିକାର ସବୁ ବଡ଼ଯାକ କ'ଣ ନିଉୟର୍କରେ ନାଁ, ଆମେରିକାର ଆଉ କେଉଁଠି ଅଛି ।

ନିଉୟର୍କ ଛଡ଼ା ଆହୁରି ବହୁ ବଡ଼ ବଡ଼ ଜିନିଷ ଆମେରିକାର ବିଭିନ୍ନ ସ୍ଥାନରେ ଅଛି । ପୃଥିବୀର ଦୀର୍ଘତମ ନଦୀ ମିଶୋରୀ-ମିସିସିପି ଏଠା ଆମେରିକାରେ । ପୃଥିବୀର ବୃହତ୍ତମ ମିଠାଜଳ ଥିବା ହ୍ରଦ 'ସୁପିରିଅର୍ ହ୍ରଦ' ଆମେରିକାରେ ରହିଛି । ପୃଥିବୀର ବୃହତ୍ତମ ଜଳ ବିଦ୍ୟୁତ୍ ତଥା ବହୁମୁଖୀ ପରିକଳ୍ପନା ଟେନେସି ଉପତ୍ୟକା ଯୋଜନା ବା ଟି. ଭି. ଏ. ଆମେରିକାରେ ପୃଥିବୀର ବୃହତ୍ତମ ଜଳବିଦ୍ୟୁତ୍ ଡାମ୍ ହୁଭର ଡାମ୍ ଆମେରିକାର । ନେଭେଡ଼ା ଓ ଏରିଜୋନା ରାଜ୍ୟ ଦୁଇ ସୀମାରେ ଅବସ୍ଥିତ । ପୃଥିବୀର ବୃହତ୍ତମ ଦୂରବୀକ୍ଷଣ ଯନ୍ତ୍ର ଆମେରିକାର ମାଉଣ୍ଟ ପାଲମୋର ପାହାଡ଼ ଉପରେ ଅବସ୍ଥିତ । ପୃଥିବୀର ସବୁଠାରୁ ସୁନ୍ଦର ଓ ଲୋକପ୍ରିୟ ଜଳପ୍ରପାତ ନାଏଗ୍ରା ଆମେରିକାରେ ରହିଛି । ପୃଥିବୀର ବୃହତ୍ତମ ବସ୍ତ୍ରଦୋକାନ ଚିକାଗୋ ସହରରେ । ପୃଥିବୀର ବୃହତ୍ତମ ପ୍ରେକ୍ଷାଳୟ ଆମେରିକାର ଆଟ୍ଲାଣ୍ଟିକ୍ ସିଟି ସହରରେ ଅବସ୍ଥିତ ।

ପୃଥିବୀର ବୃହତ୍ତମ ସିନେମା କୋମ୍ପାନୀ ଟୁଏଣ୍ଟିଏଥ୍ ସେନ୍‌ଚୁରୀ ଫକ୍ସ ଆମେରିକାରେ ଅବସ୍ଥିତ । ପୃଥିବୀର ସବୁଠାରୁ ଅଧିକ ରୋଜଗାର କରୁଥିବା ଚଳଚ୍ଚିତ୍ରତାରକା ଏଲିଜାବେଥ୍ ଟେଲର୍ ଆମେରିକାରେ ରହନ୍ତି । ପୃଥିବୀର ସବୁଠାରୁ ଅଧିକ ସଂଖ୍ୟକ ବିଶ୍ୱବିଦ୍ୟାଳୟ ଆମେରିକାରେ ଅବସ୍ଥିତ । ପୃଥିବୀର ବୃହତ୍ତମ ଓ ପ୍ରାଚୀନତମ ଇନ୍‌ଜିନିଅରିଂ ବିଶ୍ୱବିଦ୍ୟାଳୟ ଏମ୍. ଆଇ. ଟି. ଆମେରିକାରେ ରହିଛି । ପୃଥିବୀରେ ସବୁଠାରୁ ଅଧିକ ସଂଖ୍ୟକ ଟେଲିଭିଜନ୍ ଷ୍ଟେସନ ଓ ଟେଲିଭିଜନ ସେଟ୍ ଆମେରିକାରେ

ରହିଛି । ପୃଥିବୀର ବୃହତ୍ତମ ମୋଟରଗାଡ଼ି ନିର୍ମାଣକାରୀ କୋମ୍ପାନୀ 'ଜେନେରେଲ ମୋଟରସ୍' ଆମେରିକାରେ । ପୃଥିବୀର ବୃହତ୍ତମ ମୋଟରଗାଡ଼ି କାରଖାନା ଆମେରିକାର ମିଚିଗାନ୍ ରାଜ୍ୟରେ ରହିଛି । ପୃଥିବୀର ବୃହତ୍ତମ ମୋଟରଗାଡ଼ି ବ୍ୟବସାୟ କେନ୍ଦ୍ର ହେଲା ଆମେରିକାର ଡେଟ୍ରଏଟ୍ ସହର । ପୃଥିବୀର ବୃହତ୍ତମ ଜାତୀୟ ଉଦ୍ୟାନ 'ୟେଲୋଷ୍ଟୋନ ନେସନ୍ୟାଲ ପାର୍କ' ଆମେରିକାରେ ରହିଛି । ପୃଥିବୀର ସବୁଠାରୁ ବଡ଼ ଓ ପୁରୁଣା ଗଛ ରେଡ୍‌ଉଡ୍ ଆମେରିକାରେ ଅଛି । ଏହି ଗଛର ବୟସ ୫୦୦୦ ବର୍ଷରୁ ଊର୍ଦ୍ଧ୍ୱ । ଓ ଏହା ଏତେ ବଡ଼ ଯେ ଏହାର ଗଣ୍ଡି ଭିତର ଦେଇ ଏକ ରାସ୍ତା ଯାଇଛି ଓ ଏହି ରାସ୍ତାରେ କାର୍; ବସ୍ ଆଦି ଯାନବାହାନ ଯିବା ଆସିବା କରିପାରେ । ପୃଥିବୀର ବୃହତ୍ତମ ଉଡ଼ାଜାହାଜ ଉତ୍ପାଦନ-କାରୀ କୋମ୍ପାନୀ ବୋଇଙ୍ଗ୍ ଓ ଡୋଗ୍‌ଲସ୍ ଆମେରିକାରେ ଅବସ୍ଥିତ ।

ଏସବୁ ଛଡ଼ା ଆମେରିକା ପେଟ୍ରୋଲିୟମ୍, ଇସ୍ପାତ, କୋଇଲା, ତମ୍ବା, ସୀସା, ଦସ୍ତା ଆଦି ଶିଳ୍ପ ଉପଯୋଗୀ ଜିନିଷ ଉତ୍ପାଦନରେ ପୃଥିବୀରେ ଅଗ୍ରଗଣ୍ୟ । ସେହିଭଳି ଚମାଖୁ, ଗହମ, ମକା, ମାଂସ ଆଦି ଉତ୍ପାଦନରେ ଆମେରିକା ପୃଥିବୀର ବୃହତ୍ତମ ଦେଶ ।

ପୃଥିବୀର ବୃହତ୍ତମ କେମିକାଲ କୋମ୍ପାନୀ ଡୁପଣ୍ଟ ଆମେରିକାରେ ଅବସ୍ଥିତ । ପୃଥିବୀର ବୃହତ୍ତମ ଔଷଧ ଉତ୍ପାଦନ କୋମ୍ପାନୀ ଫାଇଜର ଆମେରିକାରେ ରହିଛି । ପୃଥିବୀର ବୃହତ୍ତମ ଇଲେକ୍‌ଟ୍ରିକ ଯନ୍ତ୍ରପାତି ଉତ୍ପାଦନ କୋମ୍ପାନୀ ଜେନେରେଲ ଇଲେକ୍‌ଟ୍ରିକ୍ ଓ ଓ୍ୱେଷ୍ଟିଙ୍ଗ୍ ହାଉସ ଆମେରିକାରେ । ପୃଥିବୀର ବୃହତ୍ତମ ରେଡ଼ିଓ ଟେଲିଭିଜନ୍ ନିର୍ମାଣକାରୀ କୋମ୍ପାନୀ ଆର୍.ସି.ଏ.

ଆମେରିକାରେ । ପୃଥିବୀର ବୃହତ୍ତମ ଇଲେକ୍‌ଟ୍ରିକାଲ କାରଖାନା ମିସ୍‌ଟେନ୍‌ଆ କୋମ୍ପାନୀଦ୍ୱାରା ପ୍ରତିଷ୍ଠିତ ଆମେରିକାର ମିସକ୍ୟୁସ୍‌ ଘଷର ନିକଟରେ ।

ପୃଥିବୀରେ ସବୁଠାରୁ ଅଧିକ ସଂଖ୍ୟକ ଜୀବିତ ଥିବା ନୋବେଲ ପୁରସ୍କାର ପ୍ରାପ୍ତ ବୈଜ୍ଞାନିକ ଆମେରିକାରେ ହିଁ ଅଛନ୍ତି । ପୃଥିବୀର ବୃହତ୍ତମ ବସ୍‌ କୋମ୍ପାନୀ ଗ୍ରେହାଉଣ୍ଡ ଆମେରିକାରେ ଅବସ୍ଥିତ । ପୃଥିବୀର ସବୁଠାରୁ ଅଧିକ ପରିମାଣ ରେଳରାସ୍ତା ଓ ଅନ୍ୟ ରାସ୍ତା ଆମେରିକାରେ ରହିଛି । ଆମେରିକାରେ ଯେତେ ହାଇୱେ ଅଛି ଅଛି, ପୃଥିବୀର ଅନ୍ୟ କୌଣସି ରାଷ୍ଟ୍ରରେ ଏତେ ନାହିଁ । ଭୂଇଁତଳ ରେଳଗାଡ଼ି ଥିବା ଯେତେ ସଂଖ୍ୟକ ସହର ଆମେରିକାରେ ଅଛି, ଅନ୍ୟ କୌଣସି ଦେଶରେ ସେତେ ନାହିଁ । ପୃଥିବୀର ସବୁଠାରୁ ନୌକାଗହଳ କେନାଲ ଆମେରିକାର ସୁପିରିୟର ଓ ହୁରନ୍‌ ହ୍ରଦଦ୍ୱୟ ମଧ୍ୟରେ ଅବସ୍ଥିତ । ପୃଥିବୀର ବୃହତ୍ତମ ଚଳଚ୍ଚିତ୍ର ତିଆରି କେନ୍ଦ୍ର ହେଉଛି ହୋଲିଉଡ଼୍‌ । ଏହା ଆମେରିକାରେ ଅବସ୍ଥିତ । ପୃଥିବୀର ସବୁଠାରୁ ଅଧିକ ସଂଖ୍ୟକ ଶିଳ୍ପ ଉତ୍ପାଦନକାରୀ କୋମ୍ପାନୀ; ସବୁଠାରୁ ଧନଶାଳୀ କୋମ୍ପାନୀ, ଅଧିକ ସଂଖ୍ୟକ ଗବେଷଣାଗାର, ଅଧିକ ସଂଖ୍ୟକ ସହର ଆମେରିକାରେ ଅବସ୍ଥିତ ।

ସର୍ବୋପରି ଆମେରିକା ସରକାରଙ୍କ ଆୟ ଓ ଖର୍ଚ୍ଚ ପୃଥିବୀର ସବୁ ରାଜ୍ୟ ତୁଳନାରେ ଅଧିକ ।

—*—

ଷୋଡ଼ଶ ଅଧ୍ୟାୟ

# ଜନ୍ ଗ୍ଲେନ୍‌ଙ୍କ ମହାକାଶ ଭ୍ରମଣ

ଆମେରିକାରେ ପହଞ୍ଚିବା ପରେ ଆମର ଯେଉଁ କେତୋଟି ଅନୁଭୂତି ଆମର ମନରୁ ବିସ୍ମୃତ ହୋଇନି, ସେଥିଭିତରୁ ସର୍ବପ୍ରଥମ ଆମେରିକାନ୍ ମହାକାଶଚାରୀ ଜନ୍ ଗ୍ଲେନ୍‌ଙ୍କ ମହାକାଶ ଭ୍ରମଣ ଗୋଟିଏ ।

୧୯୬୨ ମସିହା ଫେବୃୟାରୀ ମାସ ୨୦ ତାରିଖ । ମଣିଷ ଜାତିର ଇତିହାସରେ ଏକ ଅବିସ୍ମରଣୀୟ ଦିବସ । ଆମେରିକାର ପ୍ରଥମ ମହାଶୂନ୍ୟଚାରୀ ଲେଫ୍‌ଟନାଣ୍ଟ କର୍ଣ୍ଣେଲ ଜନ୍ ଗ୍ଲେନ୍ ସେହି ଦିନ ମହାଶୂନ୍ୟ ଅଭିଯାନରେ ଯିବେ ବୋଲି ଦିନ ନିର୍ଦ୍ଧିଷ୍ଟ ହୋଇଥାଏ । ଖବରକାଗଜ, ରେଡ଼ିଓ, ଟେଲିଭିଜନ ସାହାଯ୍ୟରେ ଏହି ଖବରକୁ ସପ୍ତାହକ ଆଗରୁ ଖୁବ୍ ଜୋରସୋରରେ ପ୍ରଚାର କରାଯାଇଥାଏ; ଯେପରିକି ଲୋକେ ଉଦ୍‌ଗ୍ରୀବ ହୋଇ ଏହି ବିରାଟ ଅଭିଯାନଟିକୁ ଦେଖିବାପାଇଁ ଅପେକ୍ଷାକରି ରହିଥିବେ । ତିନିଥର ଦିନ ଠିକ ହୋଇ ତିନିଥର ଦିନ ବଦଳା ହୋଇଥିବାରୁ ଲୋକଙ୍କର ଉଦ୍‌ଗ୍ରୀବତା କିଞ୍ଚିତ ପରିମାଣରେ ହ୍ରାସ ପାଇଥିଲେ ହେଁ ଜନ ଗ୍ଲେନଙ୍କ ଅଭିଯାନକୁ ନିଜ ନିଜ ନିତ୍ୟକର୍ମ, ଅଫିସ, କାରଖାନା କାମ ଆଦି ବନ୍ଦ କରି ଲକ୍ଷ୍ୟ କରିବା ଇତିହାସରେ ନୂଆ ନ ହେଲେ ହେଁ ଆଧୁନିକ ଯୁଗରେ ଏକ ଅଦ୍‌ଭୁତ କଥା ଭାବରେ ପରିଚିତ ହୋଇଥିଲା । ଜନ୍ ଗ୍ଲେନ୍‌ଙ୍କ ଅଭିଯାନକୁ ଆମେ ଯେମିତି ଭାବରେ ଟେଲିଭିଜନରେ ଲକ୍ଷ୍ୟ କରିଥିଲୁ, ସେକଥା ଏବେବି ଭୁଲିନୁ ।

ନିର୍ଦ୍ଦିଷ୍ଟ ଦିବସର ସକାଳ ହେଲାକ୍ଷଣି ଆମେ ସମସ୍ତେ ସଅଳ ସଅଳ ଉଠି ପଡ଼ିଲୁ । ଯେଝା ଯେଝା ନିତ୍ୟକର୍ମ ଶେଷ ସଙ୍ଗେ ସଙ୍ଗେ ପ୍ରାତଃଭୋଜନ ଶେଷ କରି ଟେଲିଭିଜନ ନିକଟରେ ବସିଗଲୁ । ଆମେ ବସିବା ବହୁ ଆଗରୁ ଟେଲିଭିଜନ ଷ୍ଟେସନମାନ ଆମେରିକାର ମହାଶୂନ୍ୟ ଅଭିଯାନର କେନ୍ଦ୍ର କେପ୍‌କାନା ଭେରାଲରୁ ଖବର ବିତରଣ କରିବାରେ ବ୍ୟସ୍ତ । ଆମ୍ଭମାନଙ୍କର ଅତି ପ୍ରିୟ ଏନ. ବି. ସି. ଷ୍ଟେସନ ଦ୍ୱାରା ପ୍ରସାରିତ ଖବର ଶୁଣିବା ପାଇଁ 'ଚ୍ୟାନେଲ ଫୋର' ଖୋଲିଦେଇ ବସିଲୁ । କେପ୍‌କାନାଭେରାଲ ଆମ ଘରଠାରୁ ଦେଢ଼ହଜାର ମାଇଲରୁ ଊର୍ଦ୍ଧ୍ୱ ହେଲେହେଁ ଆମକୁ ଜଣାପଡ଼ୁଥାଏ ସତେ ଯେମିତି ଆମେ କେପ୍‌କାନାଭେ-ରାଲରେ ଥାଇ ସେଠାକାର ଏହି ମହାଶୂନ୍ୟ ଯାତ୍ରାର ଦୃଶ୍ୟକୁ ଦେଖୁଛୁ । ସକାଳ ଆଠଟା ବେଳେ ଅଭିଯାନ ସମୟ ନିର୍ଦ୍ଧାରିତ ହୋଇଥିଲେହେଁ ସକାଳ ପାଞ୍ଚଟାବେଳୁ ଜନ୍ ଗ୍ଲେନ୍‌ଙ୍କୁ ମହାଶୂନ୍ୟ ଯାନ ଭିତରକୁ ନିଆଯାଇଥାଏ । ଆମେ ଟେଲିଭିଜନ-ଠାରେ ବସିଛୁ କି ନାହିଁ, ସଙ୍ଗେ ସଙ୍ଗେ ଆମକୁ ଦେଖାଇ ଦିଆଗଲା ସେତେବେଳକାର ଘଟଣା । ଜନ୍ ଗ୍ଲେନ୍ ମହାଶୂନ୍ୟ ପୋଷାକ ପିନ୍ଧି ଯାନ ଭିତରକୁ କେମିତି ଯାଉଥାନ୍ତି, ଦେଖି ଆମେ ସ୍ତବ୍ଧ ହୋଇ ପଡ଼ୁଥାଉ । ବହୁ ଦୂର ଉଚ୍ଚିଷ୍ଟ ରକେଟ ଉପରେ ଏହି କକ୍ଷଟି ରଖା ଯାଇଥାଏ । ସେଠାରେ ପହଞ୍ଚିବା ପାଇଁ ଏକ ଲିଫ୍‌ଟ ସାହାଯ୍ୟରେ ଜନ ଗ୍ଲେନଙ୍କୁ ଯିବାକୁ ପଡ଼ିଲା । ରକେଟ ଉପରେ ରକେଟ ସଜାହୋଇ ଏମିତି ଭାବରେ ଥୁଆ ହୋଇଥାଏ ସେସବୁ ଆମକୁ ଟୋକାଡ଼ିଏ ବାଇଶି ତାଲା ଉଚ୍ଚା ଭଳି ଜଣାପଡ଼ୁଥାଏ । କକ୍ଷ ଭିତରକୁ ପଶିବାକୁ ହେଲେ ଆଗେ ଗୋଡ଼ ଦୁଇଟି ପୂରାଇ ପରେ ପେଟ, ଛାତି, ମୁଣ୍ଡକୁ ପୂରାଇବାକୁ ପଡ଼େ । ଗ୍ଲେନ୍ ସେହି ସୀଟରେ

ଉଡିବାକୁ ଯିବେ । କେପ୍‌କାନାଭେରାଲର ସେହି ଦୃଶ୍ୟ ସଙ୍ଗେ ସଙ୍ଗେ ଏହି ମହାଶୂନ୍ୟ ଅଭିଯାନକୁ ଦେଖିବାପାଇଁ କେପ୍ କାନାଭେରାଲ ନିକଟସ୍ଥ କୋକୋବିଚରେ କପରି ଦର୍ଶକ ଭିଡ଼ ହୋଇଥାନ୍ତି, ତାହା ମଧ୍ୟ ଆମକୁ ଦେଖାଇ ଦିଆଯାଉଥାଏ । ମାର୍କିନ୍‌ଜାତିର ଏହି ସର୍ବପ୍ରଥମ ଅଭିଯାନ ଦେଖିବାପାଇଁ ଲକ୍ଷ ଲୋକ ସେ ସମୁଦ୍ର ବେଳାରେ ଜମାହୋଇ ନ ଥିଲେ ।

ଠିକ୍‌ସମୟ ହେଲା, ଟେଲିଭିଜନରେ ଆମକୁ ଜଣାଇ ଦିଆଗଲା ଏହି ଅଭିଯାନ ଆରମ୍ଭ ହେବାକୁ ଯାଉଛି । ଘଣ୍ଟା ଘଣ୍ଟା ସବୁ ଠିକ୍‌ଠାକ୍ । ରକେଟରେ ନିଆଁ ଲଗିବାପାଇଁ ସମୟ ଗଣାଚାଲିଥାଏ । T-10, T-9, T-8 ପରିରେ T-0 Igrtion କୁହାଯାଇଛି କି ନାହିଁ, ରକେଟରେ ଅଗ୍ନିସଂଯୋଗ ହୋଇଗଲା, ଘଣ୍ଟା ଘଣ୍ଟା ଅପର୍ଯ୍ୟାପ୍ତ ପରିମାଣର ଗ୍ୟାସ ସୃଷ୍ଟିକରି ରକେଟ ମହାଶୂନ୍ୟ ଯାନ ଓ ଜନ୍‌ଗ୍ଲେନ୍‌ଙ୍କୁ ଧରି ଊର୍ଦ୍ଧ୍ୱଗାମୀ ହେଲା । କି ବିରାଟ ସେ ବେଗ ! ନ ଦେଖିଲେ ସହଜରେ ଧାରଣା କରି ହେବ ନାହିଁ । ଟେଲିଭିଜନର ରୁପେଲି ପରଦା ଉପରେ ଆମେ ରକେଟର ବିରାଟ ବେଗଶାଳୀ ଗତି ଦେଖିବା ସଙ୍ଗେ ସଙ୍ଗେ ପୃଥିବୀ ଚତୁପାର୍ଶ୍ୱରେ ଏହାର ଗତିପଥ ଦେଖୁଥାଉଁ । ରକେଟ୍ ପୃଥିବୀ ଛାଡ଼ିବାର ସମୟ ସେକେଣ୍ଡ ପରେ ସେକେଣ୍ଡ ହିସାବରେ ଲେଖି ହୋଇଯାଉଥାଏ ଓ ସେଥିସହ ଜନ୍‌ଗ୍ଲେନ୍ ଥିବା ଯାନଟି ପୃଥିବୀର କେଉଁ କେଉଁ ଦେଶ, ସାଗର, ମହାସାଗର ଉପରେ ଗତିକରି ଚାଲିଥାଏ, ତାହା ଆମକୁ ଟେଲିଭିଜନ ପରଦା ଉପରେ ଦେଖାଇ ଦିଆଯାଉଥାଏ । ଦେଖୁ ଦେଖୁ ମହାଶୂନ୍ୟ ଯାନଟି ଆମେରିକା ଛାଡ଼ି ଆଟଲାଣ୍ଟିକ ମହାସାଗର ଅତିକ୍ରମ କରି ଆଫ୍ରିକା ମହାଦେଶ ଉପରେ ଗତିକରି ଚାଲିଲା । ଗ୍ଲେନ୍ ମହାଶୂନ୍ୟ ଯାନ ଭିତରେ କେମିତି ଅଛନ୍ତି, ତାଙ୍କ ସହିତ

ପୃଥିବୀ ପୃଷ୍ଠରୁ କଥାବାର୍ତ୍ତା କରି ସେହି କଥାବାର୍ତ୍ତାକୁ ଆମକୁ ଶୁଣାଇ ଦିଆଯାଉଥାଏ । ଗ୍ଲେନ୍ ଆଫ୍ରିକା ମହାଦେଶ ଅତିକ୍ରମ କରିଛନ୍ତି କି ନାହିଁ, ଅନ୍ଧକାର ମାଡ଼ିଆସିଲା । ପୂର୍ବ ଗୋଲାର୍ଦ୍ଧର ଅନ୍ଧକାର ଭିତରେ ଯାଇ ଯାଇ ସେ ତାଙ୍କର ଅପୂର୍ବ ଅନୁଭୂତି ବର୍ଣ୍ଣନା କରୁଥାନ୍ତି । ମହାଶୂନ୍ୟରୁ ଥାଇ ପୃଥିବୀ ପୃଷ୍ଠର ଆଲୋକ ଓ ଅନ୍ଧକାରର ଅପୂର୍ବ ମିଳନର ଦୃଶ୍ୟ ଦେଖି ମୁଗ୍ଧ ହେବା ସଙ୍ଗେ ସଙ୍ଗେ ତହିଁର ବାର୍ତ୍ତା ପୃଥିବୀ ପୃଷ୍ଠକୁ ପଠାଉଥାନ୍ତି । ଜନ୍‌ଗ୍ଲେନ୍ ଆମେରିକା ଛାଡ଼ିବାର କେଇ ମିନିଟ୍ ମଧ୍ୟରେ କେପ୍‌କାନାଭେରାଲ ସହିତ ନିୟମିତ ସମ୍ପର୍କ ହରାଇ ବସିଲେ । ମରକ୍ୟୁରୀ ପ୍ରୋଜେକ୍ଟ ତରଫରୁ ପୃଥିବୀ ପୃଷ୍ଠର ବିଭିନ୍ନ ସ୍ଥାନରେ ମହାଶୂନ୍ୟ ଯାନ ସହିତ ସମ୍ପର୍କ ସ୍ଥାପନ କରିବାପାଇଁ ଯେଉଁସବୁ ଷ୍ଟେସନ ପ୍ରତିଷ୍ଠା କରାଯାଇଥିଲା, ସେହିସବୁ ଷ୍ଟେସନ ଜରିଆରେ କେପ୍‌କାନାଭେରାଲ ଜନ୍ ଗ୍ଲେନଙ୍କ ସହିତ ଯଦିଓ କିଛି ସମ୍ପର୍କ ସ୍ଥାପନ କରିପାରିଥିଲା ।

ଦିନ ପ୍ରାୟ ସାଢ଼େ ଗୋଟାକ ବେଳେ ଗ୍ଲେନଙ୍କ ଯାନ ପୃଥିବୀ ଚାରିପାଖରେ ୩ ଥର ପର୍ଯ୍ୟଟନ କରି ପୃଥିବୀ ପୃଷ୍ଠକୁ ଫେରିଆସିବା କଥା । ଆମେ ସମସ୍ତେ ଟେଲିଭିଜନ୍ ଖୋଲିଦେଇ ଅପେକ୍ଷା କରି ବସିଥାଉଁ । ଦିନ ସାଢ଼େ ଦୁଇଟା ବେଳେ ହଠାତ୍ ସମ୍ବାଦ ମିଳିଲା ଯେ ଜନ୍ ଗ୍ଲେନ୍‌ଙ୍କୁ ନିରାପଦ ଭାବରେ ଉଦ୍ଧାର କରାଯାଇଛି । ସେ ଆଟଲାଣ୍ଟିକ ମହାସାଗରର ବର୍ମୁଡା ଦ୍ୱୀପଠାରୁ ଧରାହୋଇ ନିକଟବର୍ତ୍ତୀ ଏକ ଜାହାଜରେ ଅବସ୍ଥାନ କରୁଛନ୍ତି । ଏହି ଖବର ପାଇ ଆମେ ସମସ୍ତେ ଆଶ୍ୱସ୍ତିରେ ନିଶ୍ୱାସ ମାରିଲୁ ।

ସନ୍ଧ୍ୟାବେଳକୁ ରେଡ଼ିଓ, ଟେଲିଭିଜନ, ଖବରକାଗଜ ସବୁଥିରେ ଜନ୍‌ଗ୍ଲେନ୍‌ର ଉଚ୍ଛ୍ୱସିତ ପ୍ରଶଂସା । ପ୍ରକୃତ ବଚ୍ଛରରେ

ସୂଚିତ କରି ଗ୍ଲେନ୍ ଯେଉଁ କୃତକାର୍ଯ୍ୟତା ହାସଲ କଲେ ତହିଁର ବିଜୟଦୁନ୍ଦୁଭି ପୃଥିବୀର ସର୍ବତ୍ର ବାଜିଉଠିଲା । ଦେଶ, ଜାତି, ଧର୍ମ ନିର୍ବିଶେଷରେ ପ୍ରକୃତ ଉପରେ ମଣିଷର ଏହା ଉଲ୍ଲେଖ୍ୟ ବିଜୟ ବୋଲି ସ୍ବୀକୃତ ହୋଇଛି । ଏଥିପୂର୍ବରୁ ହୋଇଥିବା ଦୁଇଟି ବିଜୟ ହେଉଛି ରୁଷୀୟମାନଙ୍କର ।

ଏହି ଘଟଣାର କିଛିଦିନ ପରେ କେପ୍‌କାନାଭେରାଲଠାରେ ଜନ୍‌ଗ୍ଲେନ୍‌ଙ୍କର ସାମ୍ବାଦିକ ସମ୍ମିଳନୀ ଅନୁଷ୍ଠିତ ହେଲା । ପୃଥିବୀର ବହୁଦେଶର ସାମ୍ବାଦିକମାନଙ୍କ ଶତ ଶତ ପ୍ରଶ୍ନର ଉତ୍ତର ଦେଇ ସେ ନିଜର ଅପୂର୍ବ ଅନୁଭୂତି ପ୍ରକାଶ କଲେ । ମହାଶୂନ୍ୟ ମଧ୍ୟରେ ଓଜନଶୂନ୍ୟତା ଭିତରେ ଗଲାବେଳେ ଜନ୍ ନିଜ ଅନୁଭୂତି କଥା ପ୍ରକାଶ କରନ୍ତେ ଆଶ୍ଚର୍ଯ୍ୟ ମିଶ୍ରିତ ହାସ୍ୟରୋଳରେ ସଭାକକ୍ଷ କମ୍ପି ଉଠିଲା । ଟେଲିଭିଜନ୍ ପରଦା ଉପରେ ସେ ସବୁ ଦେଖି ଆମେ ଚମତ୍କୃତ ହୋଇ ପଡ଼ିଥିଲୁ ।

ମହାଶୂନ୍ୟ ଭ୍ରମଣ ଅତୀତରେ କଳ୍ପନାର ଏକ ବିଷୟବସ୍ତୁ ଥିଲେହେଁ ଆଧୁନିକ ଯୁଗରେ ଏହା ବାସ୍ତବତାରେ ପରିଣତ ହେବାକୁ ବସିଲାଣି । ସେ ଦିଗରେ ରୁଷ ତଥା ଯୁକ୍ତରାଷ୍ଟ୍ରର ଅବଦାନ ପ୍ରଶଂସନୀୟ ।

୧୯୬୨ ମସିହା ମେ ମାସ ୫ ତାରିଖରେ ମାର୍କିନ୍ କମାଣ୍ଡର ଏଲେନ୍ ସେପାର୍ଡ଼ ଓ ଜୁଲାଇମାସ ୭ ତାରିଖରେ ମାର୍କିନ କେପ୍‌ଟେନ୍ ଭର୍ଜିଲ ଗ୍ରିସମ୍ ପୃଥିବୀ ସ୍ତରପାଖରେ ନ ଘୂରି ପୃଥିବୀ ଚତୁଃପାର୍ଶ୍ବର କିୟଦଂଶ ଘୂରିଥିଲେ ।

ମହାଶୂନ୍ୟ ଅଭିଯାନରେ କେଉଁ ଦେଶ ଆଗରେ ବା କେଉଁ ଦେଶ ପଛରେ ଏ ପ୍ରଶ୍ନ ଆଜ ମଣିଷଜାତି ସମ୍ମୁଖରେ ଅନ୍ତନାହିଁ । ମହାଶୂନ୍ୟ ଅଭିଯାନରେ ସାରା ମଣିଷଜାତି କେମିତି ଆଗେଇ ଚାଲିଛି ତାହା ବାସ୍ତବିକ ବର୍ଣ୍ଣନ କରିବାର କଥା । ରୁଷ ଓ ଯୁକ୍ତରାଷ୍ଟ୍ର ମିଳିତ ହୋଇ ଏ ଦିଗରେ ଗବେଷଣା ଚଳାଇବା ପାଇଁ ଯେଉଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି ତାହା ବାସ୍ତବିକ ଅଭିନନ୍ଦନୀୟ ।

## ସପ୍ତଦଶ ଅଧ୍ୟାୟ

# ଆମେରିକାରେ ବିଭିନ୍ନ ସହର ବୁଲା

ଆମେରିକାରେ ଛୁଟି ଦିନମାନଙ୍କରେ ଓ ବେଳେବେଳେ କଲେଜରୁ ଛୁଟି ନେଇ ଆମ ପରିବାର ବଡ଼ ବଡ଼ ସହରକୁ ବୁଲି ଯାଉଁ । ନିଉୟର୍କ ସହର ଆମ ରହୁଥିବା ଓ୍ୱାଲ୍‌ଥାମ ସହରଠାରୁ ବେଶି ଦୂର ନୁହେଁ ମୋଟେ ଦୁଇଶହ ମାଇଲ ପାଖାପାଖି । ନିଉୟର୍କ ସହରକୁ ଆମେ ସ୍ୱଳ୍ପ ଘଣ୍ଟାଏରୁ କମ୍ ବୁଲିବାକୁ ଯାଉନୁ । ଲୁଗାପଟାଠାରୁ ଆରମ୍ଭ କରି ବଡ଼ ବଡ଼ ଜିନିଷ କିଣିବାକୁ ହେଲେ ବୁଲ ନିଉୟର୍କ । ସାରା ଆମେରିକାରେ ଯେଉଁଠି ଯେଉଁ ଜିନିଷ ମିଳି ହେଉ; ସବୁଠାରୁ ଶସ୍ତା ହେଉଛି ନିଉୟର୍କରେ । ନିଉୟର୍କର ରକେଫେଲର ସେଣ୍ଟର, ଷ୍ଟାଚ୍ୟୁ ଅଫ୍ ଲିବର୍ଟି, ଏମ୍ପାୟାର ଷ୍ଟେଟ୍ ବିଲଡ଼ିଂ; ରେଡ଼ିଓ ସିଟି ମିଉଜିକ୍ ହଲ, ଫ୍ରମ ବ୍ରିଜ, ବ୍ରଡ଼ୱେ, ଟାଇମସ୍ ସ୍କୋୟାର୍ ଆଦି ଆମକୁ ଖୁବ ଭଲ ଲାଗୁଥିଲା । ନିଉୟର୍କ ସହରରେ ଏତେ ଦେଖିବାର ଜିନିଷ ଅଛି, ଲେଖି ବସିଲେ ସରିବନି ।

ନିଉୟର୍କ ଭଳି ଓ୍ୱାଶିଂଟନ୍ ସହର ଦେଖିବାକୁ ଖୁବ ଭଲ ଲାଗେ । ଆମେରିକାର ରାଜଧାନୀ ଭାବରେ ପୃଥିବୀ ପ୍ରସିଦ୍ଧ । ଆମେ ଓ୍ୱାଶିଂଟନ୍‌ରେ ତିନିଦିନ ଥିଲୁଁ । ସାରା ଯୁକ୍ତରାଷ୍ଟ୍ରର ଶାସନ କେନ୍ଦ୍ର କେପିଟଲ ପ୍ରାସାଦ; ଆମେରିକା ପ୍ରେସିଡେଣ୍ଟଙ୍କ ବାସ ଭବନ,

ପେଣ୍ଟାଗନ, ଲିଂକନ୍ ମେମୋରିଆଲ୍, ଜେଫର୍ସନ୍ ମେମୋରିଆଲ୍ ଆଦି ବହୁ ଦର୍ଶନୀୟ ସ୍ଥାନ ଦେଖିଲୁଁ ।

ସୁନ୍ଦର ଦୃଶ୍ୟ ଭିତରେ ଆମକୁ ସବୁଠାରୁ ଅଧିକ ମୁଗଧ କରିଥିଲା; ମେନ୍ ରାଜ୍ୟସ୍ଥ ଜାତୀୟ ଉଦ୍ୟାନ ଏକେଡ଼ିଆ ନେସନେଲ ପାର୍କ ଓ ନିଉୟର୍କ ରାଜ୍ୟର ପୃଥିବୀ ପ୍ରସିଦ୍ଧ ଜଳ ପ୍ରପାତ ନାଏଗ୍ରା ଜଳପ୍ରପାତ । ଏଭଳି ସୁନ୍ଦର ଜଳପ୍ରପାତ ପୃଥିବୀରେ ବିରଳ । ପ୍ରତିବର୍ଷ ପୃଥିବୀର ଚାରିଆଡ଼ୁ କେତେ ଲୋକ ଯେ ଏଠାକୁ ଆସନ୍ତି, ତାର କଳନା ନାହିଁ । ନାଏଗ୍ରା ଜଳପ୍ରପାତ ଦେଖିଲେ ଲୋକ ଶୋକ ଶୋଷ ଭୁଲିଯିବ । ଏକେଡିଆ ନେସନାଲ ପାର୍କ ସେହିଭଳି ସୁନ୍ଦର । ଏଥି ଭିତରେ ଥିବା କେଡ଼ିଲକ୍ ମାଉଣ୍ଟେନ ଉପରକୁ ଗଲେ ମନ ଆନନ୍ଦରେ ନାଚିଯାଏ ।

ଆମେରିକାର ଅନ୍ୟାନ୍ୟ ସହର ଭିତରୁ ଆମକୁ ମୁଗ୍ଧ କରିଥିଲା, ଚିକାଗୋ, ଫିଲ୍‌ଡେଲ୍‌ଫିଆ ଓ ଆଟଲାଣ୍ଟିକ୍ ସିଟି । ଚିକାଗୋ ସହରର ସୌନ୍ଦର୍ଯ୍ୟ ଅନିର୍ବଚନୀୟ । ସୁପ୍ରସିଦ୍ଧ ମିଚିଗାନ୍ ହ୍ରଦ କୂଳରେ ଏହି ପ୍ରସିଦ୍ଧ ସହରଟି ଅବସ୍ଥିତ । ଏହି ସହରରେ ଆମେ ତିନିଦିନ ରହି ସହରର ନାନା ଦର୍ଶନୀୟ ସ୍ଥାନ ଦେଖିଥିଲୁଁ । ଫିଲ୍‌ଡେଲ୍‌ଫିଆ ଆମେରିକାର ବଡ଼ ବଡ଼ ସହର ଭିତରୁ ଗୋଟିଏ । ଆମେ ଏହାକୁ ଯେତେବେଳେ ଦେଖିଲୁ, ଏହାର ରାସ୍ତାଘାଟ ଆମକୁ ନିଉୟର୍କ ଭଳି ଲାଗିଲା । ଖାଲି ତଫାତ୍ ହେଉଛି ନିଉୟର୍କ ଭଳି ୯୦ ଏତେ ବଡ଼ ବଡ଼ ଆକାଶଚୁମ୍ବୀ ପ୍ରାସାଦ ନାହିଁ । ଯା' ଅଛି ସେଗୁଡ଼ିକ ଆକାରରେ ଛୋଟ, ୨ଇ ୩୦।୪୦ ତାଲା ଭିତରେ । ନିଉୟର୍କରେ ଯେମିତି ୭୦।୭୦।୮୦ ତାଲା, ସେମିତି ଏଠି ନାହିଁ ।

ଆଟଲାଣ୍ଟିକ୍ ସିଟି ଫିଲାଡେଲ୍‌ଫିଆ ସହରଠାରୁ ବେଶୀ ଦୂର ନୁହେଁ । ଏହା ଆଟଲାଣ୍ଟିକ୍ ମହାସାଗର କୂଳରେ ଅବସ୍ଥିତ । ସହରଟି ସମୁଦ୍ର କୂଳରେ ଗଢ଼ି ଉଠିଥିବାରୁ ଅତି ସୁନ୍ଦର ଦିଶେ । ଗ୍ରୀଷ୍ମଦିନେ ଏଠି ଲୋକ ଗହଳି ଖୁବ୍ ବେଶି । ନାନା ପ୍ରକାର ଖେଳ ଓ ପ୍ରତିଯୋଗିତା ପାଇଁ ଏହି ସହରଟି ଅତି ପ୍ରସିଦ୍ଧ ।

ନାଏଗ୍ରା ଜଳପ୍ରପାତ ଦେଖିଗଲା ବେଳେ ଆମେ ବାଟରେ ଦୁଇଟି ବଡ଼ ବଡ଼ ସହର ଦେଖିଥିଲୁଁ । ଗୋଟିଏ ହେଉଛି ବଫେଲୋ ସହର ଓ ଅନ୍ୟଟି ରୋଚେଷ୍ଟର । ରୋଚେଷ୍ଟରରେ ହେଉଛି ସୁବିଖ୍ୟାତ ଫଟୋ କୋମ୍ପାନୀ କୋଡାକ୍‌ର କେନ୍ଦ୍ର, ଅଫିସ ଓ କାରଖାନା । ଆମ ଦେଶରେ ଯେତେ ପ୍ରକାର ଇଷ୍ଟମେନ୍ କଲର ରଙ୍ଗୀନ୍ ଚଳଚ୍ଚିତ୍ର ତିଆରି ହେଉଛି, ସେହି ରଙ୍ଗିନ୍ କଥା ଫିଲମର ତିଆରିସ୍ଥଳ ହେଲା ଏହି ସହର । ବଫେଲୋ ଏରି ହ୍ରଦ କୂଳରେ ଅବସ୍ଥିତ; ଗୋଟିଏ ବଡ଼ କଳ କାରଖାନା ପୂର୍ଣ୍ଣ ନଗର ।

ତାଛଡ଼ା ଆମକୁ ଭାରିଭଲ ଲାଗିଥିଲା ପିଟସବର୍ଗ ସହର । ଏହାର ବିଶ୍ୱବିଦ୍ୟାଳୟ ଏକ ପ୍ରକାଣ୍ଡ ଆକାଶଚୁମ୍ବୀ ପ୍ରାସାଦରେ ଅବସ୍ଥିତ । ମସ୍କୋକୁ ଛାଡ଼ି ଅନ୍ୟ କୌଣସି ବିଶ୍ୱବିଦ୍ୟାଳୟରେ ଏହି ପ୍ରାସାଦ ଭଳି ଉଚ୍ଚ ପ୍ରାସାଦ ନାହିଁ । ଏହି ପ୍ରାସାଦ "କେଥେଡ୍ରେଲ୍ ଅଫ୍ ଲର୍ଣ୍ଣିଙ୍ଗ"କୁ ଦେଖି ଅତ୍ୟଧିକ ମୋହିତ ହୋଇ ଯାଇଥିଲୁଁ । ପିଟସବର୍ଗର କାରନେଗୀ ଅନୁଷ୍ଠାନ, କାରନେଗୀ ମିଉଜିୟମ୍ ଆଦି ଆମକୁ ଖୁବ୍ ମୁଗ୍ଧ କରିଥିଲା । ତା ଛଡ଼ା ପିଟସବର୍ଗ ସହରରେ ବହୁ ଲୁହା ଓ ଇସ୍ପାତ କାରଖାନା ରହିଛି । ଏଥିପାଇଁ ଏହାର ଅନ୍ୟନାମ ଇସ୍ପାତ ନଗରୀ । ପିଟସବର୍ଗରେ ଥିବା ଏକ ଷ୍ଟେନଲେସ ଷ୍ଟିଲ ତିଆରି ପ୍ରାସାଦ ଓ ଅଡ଼ିଟୋରିୟମର ବିଶାଳତା ଆମେ ଭୁଲି ପାରିନୁ ।

ପୃଥିବୀରେ ଏମିତି କେଉଁଠି ଷ୍ଟେନ୍‌ଲେସ୍ ଷ୍ଟିଲ୍‌ରୁ ତିଆରି ପ୍ରାସାଦ ଅଛି କି ନାହିଁ ସନ୍ଦେହ ।

ଏସବୁକୁ ଛାଡ଼ି ବଲଟିମୋର, କ୍ଲିଭଲେଣ୍ଡ ଆଦି କେତେ ସହର ବୁଲିଛୁଁ । ଆମେରିକାରେ ଗାଁ ତୁଳନାରେ ସହର ସଂଖ୍ୟା ବେଶି । ଆମେ ଯେଉଁ ମାସାଚୁସେଟସ ରାଜ୍ୟରେ ଥିଲୁଁ ସେଠି ସହର ସଂଖ୍ୟା ଢେର ବେଶି । ପ୍ରତି ଶନିବାର ଓ ରବିବାର ଦିନ ଆମ କାମ ହେଲା ଘୂରିଆଡ଼େ ସହର, ମୋଫସଲ ଆଦି ବୁଲିବା । ଛୁଟି ମାନଙ୍କରେ ଆମ ପରିବାର ଆମ ମୋଟର ଗାଡ଼ିରେ ବୁଲି ବାହାରି ପଡ଼ୁ ପାଖଆଖ ସହର ପରିକ୍ରମା କରି । ଆମକୁ ସେସବୁ ସ୍ଥାନକୁ ବୁଲାଇ ନେବାରେ ଖୁବ୍ ସାହାଯ୍ୟ କରନ୍ତି ଆମ ପରିବାରର ବିଶିଷ୍ଟ ବନ୍ଧୁ ମିସେସ୍ ଗ୍ରେସ ଲୁଡ଼ର ଓ ତାଙ୍କ ପରିବାର । ଆମ ଦୁଇଟି ପରିବାର ବହୁଥର ସାଙ୍ଗ ହୋଇ ମାସାଚୁସେଟସ୍ ରାଜ୍ୟର ବହୁ ଷ୍ଟେଟ ବଡ଼ ସହର, ଗାଁ; ମୋଫସଲ ବୁଲିଛୁ । ସେମାନଙ୍କ ସହିତ ଯାଇ ବହୁ ସ୍ଥାନରେ ବହୁ ମିଟିଂ ଦେଖିଛୁଁ ଓ ନାନା କଥା ଶିଖିଛୁ । ସେମିତି ଏକ ପରିବାର ମିଳି ନ ଥିଲେ ଆମର ଆମେରିକା ଅନୁଭୂତି ଅସଂପୂର୍ଣ୍ଣ ରହିଯାଇ ଥାଆନ୍ତା ।



# ଅଷ୍ଟାଦଶ ଅଧ୍ୟାୟ

# ଆମେରିକାରୁ ବିଦାୟ

ରହୁଁ ରହୁଁ ଦୁଇବର୍ଷରୁ ଅଧିକ କାଳ କଟିଗଲା, ଆମେ ଜାଣିପାରିଲୁ ନି । ଘରକୁ ଫେରିବାପାଇଁ ସମସ୍ତଙ୍କଠୁଁ ମୋ ମନ ଅଧିକ ଚଞ୍ଚଳ ହୋଇ ପଡୁଥାଏ । ଅଧ୍ୟାପକ ପ୍ରିଡ଼ମାନ୍ ଡକ୍ଟର ମହାପାତ୍ରଙ୍କୁ ଆହୁରି ବର୍ଷେ ରହିବାପାଇଁ ଅନୁରୋଧ କରୁଥିଲେ ହେଁ ଫେରିବା ମନୋଭାବ ଆମ ମନରେ ଏତେ ଦୃଢ଼ ହୋଇ ଯାଇଥାଏ ଯେ ତାଙ୍କ ଅନୁରୋଧକୁ ଡକ୍ଟର ମହାପାତ୍ର ରଖିପାରି ନ ଥିଲେ । ଯାହା ବା ରଖିଥାନ୍ତେ, ମୋ ଶାଶୁଙ୍କ ଦେହ ଭାରତରେ ଭଲ ରହୁ ନ ଥିବାରୁ ଆମେ ଆମେରିକାରେ ଅଧିକ ଦିନ ରହିବା ଉଚିତ ମନେ କଲୁ ନି । ଅନେକଥର ବହୁଥର ନାନାପ୍ରକାର ରୋଗରେ ଶାଶୁ ଆକ୍ରାନ୍ତ ହେବାର ଖବର ପାଇ ଆମେ ଅସ୍ଥିର ହୋଇ ପଡ଼ିଲୁଁ । ଏହି ଅସ୍ଥିରତା ଆମକୁ ଆମେରିକାରେ ଆଉ ଗୋଟାଏ ଅଧିକା ବର୍ଷ ରହିବାକୁ ଦେଲା ନି ।

ଆମେରିକାକୁ ଆମେ ଯାଇଥିଲୁଁ ଉଡ଼ାଜାହାଜରେ । ତେଣୁ ଫେରିବାବେଳେ ପାଣି ଜାହାଜରେ ଆସିବା ଠିକ୍ କରିଥାଉଁ । କାରଣ ତା ନ କଲେ, ଆମର ପାଣିଜାହାଜର ଅଭିଜ୍ଞତା ଅଭାବ ପଡ଼ିଯିବ । ଆମେରିକାର ନିଉୟର୍କ ବନ୍ଦରରୁ ପୃଥିବୀ ପ୍ରସିଦ୍ଧ କୁଇନ୍‌ମେରୀ ଜାହାଜରେ ଆମେରିକା ଛାଡ଼ିବାପାଇଁ ଠିକ୍ ହେଲା,

ସେଥି ଅନୁସାରେ ଜାହାଜର ଏକ କେବିନ୍ ଆମ ପରିବାରପାଇଁ ରିଜର୍ଭ ହେଲା । କିନ୍ତୁ ଆମେରିକା ଛାଡ଼ିବା ମାସେ ପୂର୍ବରୁ ଆମ ପରିବାରର ସମସ୍ତେ ଜଣେ ପରେ ଜଣେ ଏମିତି ଭାବରେ ହାଡ଼ଫୁଟି ରୋଗରେ ପଡ଼ିଲେ ଯେ ଆମେ ବାଧ୍ୟହୋଇ କୁଇନ୍ ମେରୀରେ ଆମପାଇଁ ରିଜର୍ଭ ହୋଇଥିବା ସ୍ଥାନ ଛାଡ଼ିବାକୁ ବାଧ୍ୟ ହେଲୁଁ । ପାଣିଜାହାଜରେ ଆମେରିକା ଛାଡ଼ିବା ସମ୍ଭବପର ହେଲାନା । ପୁଣି ସେଥି ଉଡ଼ାଜାହାଜରେ ଆମେରିକା ଛାଡ଼ିବା ଠିକ୍ ହେଲା ।

ଆମେରିକାରୁ ବିଦାୟ ନେଇ ଆମେ ଇଉରୋପର ବିଭିନ୍ନ ସହର ବୁଲିବା କଥା । ସେଥି ବୁଲାବୁଲି ସବୁପାଇଁ ଉଡ଼ାଜାହାଜରେ ଯିବୁଁ ବୋଲି ଠିକ୍ କରିନେଲୁଁ । ଆମେରିକାରେ ରହିବା ଭିତରେ ଆମେ ଆମେରିକାର ବହୁତଗୁଡ଼ିଏ ସହର ବୁଲି ସାରିଥିଲୁଁ । ନିଉୟର୍କ, ଓ୍ୱାସିଙ୍ଗ୍‌ଟନ, ଫିଲ୍‌ଡେ ଫିଆ, ଆଟେଲାଣ୍ଟିକ୍‌ସିଟି, କ୍ଲିଭରେଣ୍ଡ, ନଏଗ୍ରାଫଲ୍‌ସ୍, ବଫେଲୋ, ଚିକାଗୋ, ପିଟ୍‌ସବର୍ଗ ଆଦି ସହରଗୁଡ଼ିକ ବେଶ୍ ଭଲଭାବରେ ବୁଲି ସାରିଥାଉଁ । ଆମେରିକାର ପଶ୍ଚିମ ଉପକୂଳ ଲସଏଞ୍ଜେଲେସ, ହୋଲିଉଡ୍ ଆଦି ଦେଖିବାକୁ ମନ ଥିଲେହେଁ ସମୟ ଅଭାବରୁ ଆମ ପକ୍ଷରେ ଦେଖିବା ସମ୍ଭବପର ହେଲାନାହିଁ ।

୧୯୬୩ ମସିହା ସେପ୍‌ଟେମ୍ବର ମାସ ୪ ତାରିଖ ଦିନ ଆମର ନିଉୟର୍କର ସୁବିଖ୍ୟାତ ଆନ୍ତର୍ଜାତିକ ଉଡ଼ାଜାହାଜ ଘାଟିରୁ ଆମେରିକା ଛାଡ଼ି ଲଣ୍ଡନ ଅଭିମୁଖେ ଆସିବା କଥା । ନିଉଜେରସିର୍ ଆମର ମାର୍କିନ୍ ବନ୍ଧୁ ଡୋନର ପରିବାରଙ୍କ ଆମନ୍ତ୍ରଣ କ୍ରମେ ଆମେରିକା ଛାଡ଼ିବା ପୂର୍ବ କେଇଦିନ ତାଙ୍କ ଘରେ କଟାଇବା ସ୍ଥିର ହୋଇଥାଏ । ତେଣୁ ଆମେ ଯାଇଁ ଅଗଷ୍ଟମାସ ୩୦ ତାରିଖ

ଦିନ ସେମାନଙ୍କ ଘର ନିକଟବର୍ତ୍ତୀ ନିଉଆର୍କ ଉଡ଼ାଜାହାଜ ଘାଟିରେ ଅବତରଣ କଲୁଁ । ଆମକୁ ନେବାପାଇଁ ମିସେସ୍ ଡୋନର ନିଜ କାର୍‌ନେଇ ଆସିଥାନ୍ତି । ତାଙ୍କ ସହିତ ତାଙ୍କ ଦୁଇଟିଝିଅ ଲିଜା ଓ ଆମି । ଯଥା ସମୟରେ ତାଙ୍କ ଘରେ ଯାଇ ପହଞ୍ଚିଲୁଁ । ସେଠି ଆମ ରହଣି ପାଞ୍ଚଦିନ । ନାନାପ୍ରକାର ସହର ବୁଲି ନିଉୟର୍କ ନଗରୀର ଶ୍ରେଷ୍ଠ ଘରଦ୍ୱାର, ସିନେମା ଥିଏଟର୍ ଦେଖା ଛଟବୁଲା ଆଦିରେ ସେହି ପାଞ୍ଚଦିନ ଏମିତି କଟିଗଲା ଯେ ଆମେ ଜାଣି ପାରିଲୁ ନି ଏହି ପାଞ୍ଚଦିନ କାଳ କେମିତି କଟିଲା ।

ରହୁଁ ରହୁଁ ଆମ ବିଦାୟନେବା ଦିନ ପହଞ୍ଚିଗଲା । ମିସେସ୍ ଡୋନର ତାଙ୍କ ଗାଡ଼ିରେ ଆମକୁ ନିଉଜେରସିରୁ ନେଇ ନିଉୟର୍କ ଆନ୍ତର୍ଜାତିକ ଉଡ଼ାଜାହାଜ ଘାଟିରେ ପହଞ୍ଚାଇଦେବାପାଇଁ ଠିକ୍ ହୋଇଥାଏ । ମିସେସ୍ ଡୋନରଙ୍କ ସହିତ ଆମେ ସମସ୍ତେ ବାହାରି ପଡ଼ିଲୁଁ । କାର୍ ଚଳାଇବାରେ ସେ ବେଶ୍ ଧୁରନ୍ଧର । ଆମେରିକାର ଶହ ଶହ ଗୋଳମାଳିଆ ରାସ୍ତା ଭିତରେ ନେଇ ଆମକୁ ଉଡ଼ାଜାହାଜ ଘାଟିରେ ଯେମିତି ପହଞ୍ଚାଇଦେଲେ ଆମେ ଦେଖି ତାଜୁବ୍ । ଆମ ଉଡ଼ାଜାହାଜ ଛାଡ଼ିବା ଡେରି ଥାଏ । ମିସେସ୍ ଡୋନର୍‌ଙ୍କୁ ବଡ଼ ଦୁଃଖର ସହିତ ବିଦାୟ ଦେଲୁଁ ।

## ଇଉରୋପ ଭ୍ରମଣ

ଆମର ଏଆର ଇଣ୍ଡିଆ ଇଣ୍ଟର ନେସନାଲ କୋମ୍ପାନୀ ପରିଚାଳିତ ବୋଇଙ୍ଗ୍ ଜେଟ୍ ବିମାନରେ ନିଉୟର୍କରୁ ଲଣ୍ଡନ ଆସିବା ଠିକ୍ ହୋଇଥାଏ । ରାତି ନ'ଟାରେ ଜାହାଜ ଛାଡ଼ିଲା । ସକାଳ ସାତଟାରେ ଲଣ୍ଡନରେ ପହଞ୍ଚିବ । ଜାହାଜ ଭିତରେ ଅତି

ଦ୍ରବ୍ୟସୁନ୍ଦର ସର୍ବିଭୋଜନ । ସାତଖଣ୍ଡିଆ ପଟୋଲ୍ସିତ ମୋଭିଳ ଗାଡ଼ି ପିନ୍ଧି ଦିଆନଗ୍ରା କରୁଥାନ୍ତି । ସାଢଖଣ୍ଡିଆ ସାଡ଼ରେ ରହିବା, ପଲଙ୍କ, ଚଟକାଣ୍ଡ ଆଦି, କେବଳ ବିଛଣା ଗରମ । ଆଟଲାଣ୍ଟିକ୍ ମହାସାଗର ଉପରେ ଆମର ସର୍ବିଭୋଜନ ଶେଷ ହେଲା, ଖିଆପିଆ ସହିତ ବେଳକୁ ସାତ ବାଜିଛି । ଆଟଲାଣ୍ଟିକ ମହାସାଗର ଉପରେ ଆମେ ସର୍ବିଭୋଜନ କରୁଥାଇଁ ପୁଣି ସାଢଖଣ୍ଡିଆ ରହିବା, ସାବଲ୍ ବେଳକୁ ମନରେ ଖୁସି ଆସୁଥାଏ । ଆମ ଜାହାଜ ପୁଣି ଉଡ଼ୁଥାଏ ୪୦.୦୦୦ ଫୁଟ ଉଚ୍ଚରେ, ଘଣ୍ଟାକୁ ୬୦୦ ମାଇଲ ବେଗରେ । ସେହି ପରିସ୍ଥିତିରେ ଆମେ ବେଶ୍ ପେଟପୁରାଇ ଖାଇ ଚାଲିଥାଉଁ ।

## ଲଣ୍ଡନ ପରିକ୍ରମା

ଲଣ୍ଡନ ଉଡ଼ାଜାହାଜ ଘାଟିରେ ପହଞ୍ଚିଲା ବେଳକୁ ସକାଳ ସାତଟା । ଓହ୍ଲାଇଲା ବେଳକୁ ଉଡ଼ାଜାହାଜ ଘାଟିରେ ଅଜସ୍ର ମେଘ ବରଷୁଥାଏ । ସେହି ମେଘ ଭିତରଦେଇ ଆମ ଜାହାଜ ଆକାଶରୁ ଓହ୍ଲାଇ ଲଣ୍ଡନ ଉଡ଼ାଜାହାଜ ଘାଟିରେ ରହିଲା । ଲଣ୍ଡନରେ ଆମକୁ ହୋଟେଲକୁ ନେବାପାଇଁ ଡକ୍ଟର ମହାପାତ୍ରଙ୍କ ସାଙ୍ଗ ହରିବାବୁ ଉଡ଼ାଜାହାଜ ଘାଟିକୁ ନ ଆସି ଉଡ଼ାଜାହାଜ ଟାରମିନ-ସକୁ ଆସିଥାନ୍ତି । ଆମେ ଲଣ୍ଡନର କେଉଁ ହୋଟେଲରେ ରହିବୁ, ଲଣ୍ଡନର କ'ଣ କ'ଣ ଦେଖିବୁ ସେ ସବୁ ଠିକ୍ କରିଥାନ୍ତି ହରିବାବୁ । ଉଡ଼ାଜାହାଜ ଟାରମିନାସରୁ ଟେକ୍ସିଟିଏ କରି ହରିବାବୁଙ୍କ ସହିତ ଆମପାଇଁ ରିଜର୍ଭ ହୋଇଥିବା ହୋଟେଲକୁ ଚାଲିଲୁଁ । ହୋଟେଲଟି ଲଣ୍ଡନ ବିଶ୍ୱବିଦ୍ୟାଳୟ ପାଖରେ ରସେଲ ସୋୟାରରେ ଲଣ୍ଡନ ସହର ସିନା ଭାରତରୁ ଗଲାବେଳକୁ ବେଶ୍ ଭଲ ଲାଗୁଥିଲା, କିନ୍ତୁ ଆମେରିକାରେ ରହି ଆସିଲାରୁ ଆମକୁ ବିଶେଷ ଭଲ ଲାଗିଲା ନା । ଆମେରିକାରେ ଆମେ ଯେଉଁସବୁ

ହୋଟେଲରେ ରହି ଆସିଥିଲୁଁ, ସେ ତୁଳନାରେ ଏ ହୋଟେଲ-ଗୁଡ଼ିକ ଅତି ପୁରୁଣା କାଳିଆ । ରାସ୍ତାଘାଟ, ମଟରଗାଡ଼ି ସବୁ କିଛି ମୋତେ ଓ ମୋ ପିଲାମାନଙ୍କୁ ଭଲ ଲାଗିଲା ନାହିଁ । ଲଣ୍ଡନ ସହର ଆମକୁ ଜଣାପଡ଼ିଲା ଯେପରି କଲିକତା ସହର । ଆମେରିକା ସହରର ଚାକଚକ୍ୟ, ବଡ଼ ବଡ଼ କୋଠା, ବଡ଼ ବଡ଼ ଦୋକାନ ବଜାର, ବଡ଼ ବଡ଼ ମୋଟରଗାଡ଼ି ଏ ସହରରେ ନାହିଁ । ଲଣ୍ଡନରେ ଆମର ଚାରିଦିନ ରହିବା କଥା । ସେଥିରୁ ଦିନଟାଏ ଆମର କେମ୍ବ୍ରିଜ୍ ସହର ଓ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଦେଖିବା କଥା । ବରବାବୁ ଆମ ଚାରିଦିନ ପାଇଁ ଗୋଟାଏ ବଡ଼ ପ୍ରୋଗ୍ରାମ କରିଥାନ୍ତି । ସେହି ପ୍ରୋଗ୍ରାମ ଅନୁଯାୟୀ ଆମେ ପ୍ରଥମଦିନ ଲଣ୍ଡନର ସୁବିଖ୍ୟାତ ଓ୍ୱାକ୍ସମିଉଜିୟମ, ପ୍ଲାନେଟେରିୟମ, ଟ୍ରଫାଲଗାର ସ୍କୋୟାର, ପିକାଡେଲି ସାରକାସ୍ ଆଦି ବୁଲି ଆସିଲୁଁ । ସନ୍ଧ୍ୟାବେଳେ ପିକାଡେଲି ସାରକସ୍‌ର ସୌନ୍ଦର୍ଯ୍ୟ ଅତି ଉଚକୋଟୀର । ସାରା ଛକଟି ଦିନଭଳି ଆଲୋକିତ ହୋଇଥାଏ । ଥିଏଟର, ନାଚଘର, ସିନେମା ଘରରେ ଏ ସ୍ଥାନଟି ପୂର୍ଣ୍ଣ । ବିଲାତ ଫେରନ୍ତା ବହୁ ଲୋକ ଏହି ପିକାଡେଲି ସାରକାସ୍ ସୌନ୍ଦର୍ଯ୍ୟକୁ ମନେ ପକାଇ ଉତ୍‌ଫୁଲ୍ଲ ହୁଅନ୍ତି । ଆମେରିକା ଫେରନ୍ତା ବାଳିଙ୍କୁ ଏହା ବିଶେଷ ଭଲ ନ ଲାଗିଲେ ହେଁ ଆମକୁ ମନ୍ଦ ଲାଗୁ ନ ଥିଲା ।

ଦ୍ୱିତୀୟ ଦିନରେ ବକିଙ୍ଗହାମ ରାଜପ୍ରାସାଦ ସେଣ୍ଟଜେମସ୍ ପାର୍କ, ସେଣ୍ଟଜେମସ ପେଲେସ୍ ଟାଓ୍ୱାରବ୍ରିଜ୍, ଟାଓ୍ୱାର ହଲ୍ ଆଦି ଦେଖିବା ପ୍ରୋଗ୍ରାମ ଥାଏ । ବରବାବୁ ଲଣ୍ଡନରେ ରହୁଥିବାରୁ ସବୁ ରାସ୍ତାଘାଟ ତାଙ୍କୁ ଜଣାଶୁଣା । କେଉଁଠାକୁ ଟେକସିରେ ଯିବାକୁ ହେବ, କେଉଁଠାକୁ ଭୂଇଁତଳ ଟ୍ରେନରେ ଯିବାକୁ ହେବ।

କେଉଁଠାକୁ ବସରେ ଯିବାକୁ ହେବ, ଆମକୁ କଷ୍ଟ କରିବାକୁ ପଡ଼ୁ ନ ଥାଏ ।

ତୃତୀୟ ଦିନ ଆମର କେମ୍ବ୍ରିଜ୍ ଯିବା କଥା । ସକାଳ ସକାଳ ହୋଟେଲରୁ ପ୍ରାତଃଭୋଜନ ଶେଷ କରି କେମ୍ବ୍ରିଜ ସହର ଉଦ୍ଦେଶ୍ୟରେ ବାହାରି ପଡ଼ିଲୁଁ । କେମ୍ବ୍ରିଜକୁ ଯିବାକୁ ହେଲେ ଲଣ୍ଡନରୁ ଟ୍ରେନରେ ଯିବାକୁ ପଡ଼ିବ । ଯଥା ସମୟରେ ଆମେ ଯାଇ ଷ୍ଟେସନରେ ପହଞ୍ଚିଲୁ । ସେଠାରୁ ଟ୍ରେନରେ ଯାଇ କେମ୍ବ୍ରିଜ ସହରରେ ପହଞ୍ଚିଲୁ । ସହରଟି ଭାରି ଭଲ ଲାଗିଲା । ଶାନ୍ତ ସହରଟିଏ, ଟିକିଏ ଗୋଳମାଳ କେଉଁଠି ନାହିଁ । ରାସ୍ତାରେ ବି ଗହଳି ନାହିଁ । ସହରଟି ଖାଲି କଲେଜରେ ପୂର୍ଣ୍ଣ । ଏଠି ଏ କଲେଜ, ସେଠି ସେ କଲେଜ, ଏମିତି କେତେ କଲେଜ । କେତେ କଲେଜ ନାଁ ମନେରଖିବ ? କେମ୍ବ୍ରିଜର ପ୍ରଧାନ ରାସ୍ତାରେ ଆମେ ବୁଲି ବୁଲି ବୁଲିଲୁଁ । ତା ନ ହେଲେ କଲେଜଗୁଡ଼ାକ ଦେଖି ହେବନି । ଟ୍ରିନିଟି କଲେଜ, କ୍ରାଇଷ୍ଟ କଲେଜ, ଏମିତି କେତେ କଲେଜ ଦେଖି ଦେଖି ଶେଷରେ ସୁପ୍ରସିଦ୍ଧ କେଭେଣ୍ଡିଜ୍ ଗବେଷଣା-ଗାରରେ ପହଞ୍ଚିଲୁ । ଡାକ୍ତର ମହାପାତ୍ର କହୁଥିଲେ, ନୋବେଲ ପୁରସ୍କାର ଆରମ୍ଭ ହେବା ଦିନଠାରୁ ଏହି ଗବେଷଣାଗାରରେ ନୋବେଲ୍ ପ୍ରାଇଜ୍ ପାଇ ନ ଥିବା ଲୋକ ନ ଥିବା ଘଟଣା କେବେ ଘଟିନି । ସବୁବେଳେ ଏଠି କେହି ନା କେହି ନୋବେଲ ପୁରସ୍କାରପ୍ରାପ୍ତ ଅଧ୍ୟାପକ ଥାନ୍ତି ।

ଚତୁର୍ଥଦିନ ଆମର ଲଣ୍ଡନରେ କେତେ ଜାଗା ଦେଖିବା ବ୍ୟତୀତ ବଜାର ବୁଲିବା ପ୍ରଧାନ କାମ ଥାଏ । ଝିଅବୋହୂଙ୍କ ବ୍ୟତୀତ ଆମ ପରିବାରର ଅନ୍ୟତମ ବନ୍ଧୁ ଶ୍ରୀମତୀ ଶାନ୍ତିଲତା

କାନନ୍‌ଗୋ ସେହିଦିନ ଆମ ସହିତ ଯୋଗ ଦେଲେ । ଶ୍ରୀମତୀ କାନନ୍‌ଗୋଙ୍କ ସହିତ ପରିଚୟ କରିଥିଲୁ । ଏଠି ତାଙ୍କୁ ଦେଖି ମୋତେ ଏତେ ଖୁସି ଲାଗିଲା ଯେ ସେକଥା ବର୍ଣ୍ଣିହେବ ନାହିଁ । ଏତେ ଗୁଡ଼ିଏ ସାଙ୍ଗସାଥିଙ୍କୁ ଦେଖି ବେଳେବେଳେ ଭ୍ରମ ହୋଇଯାଉଥିଲା, ଆମେ କଟକରେ ଅଛୁ ନା ଲଣ୍ଡନ ସହରରେ ଅଛୁ । ଲଣ୍ଡନ ସହରର ବଜାର କଥା କ'ଣ କହିବି ? ନିଉୟର୍କର ପୃଥିବୀ ପ୍ରସିଦ୍ଧ ବଜାରମାନ ଯେ ଦେଖିଛୁ, ତାକୁ ଲଣ୍ଡନ ସହରର ବଜାର କ'ଣ ଲାଗିବ ? ଯା ହେଉ ବଜାରବୁଲା ସଙ୍ଗେ ସଙ୍ଗେ କେତେ ଗୁଡ଼ାଏ ଜିନିଷ କଣାହେଲା । ଭାରତୀୟ ରେଷ୍ଟୁରେଣ୍ଟରେ ବରି ସିଙ୍ଗଡ଼ା, ରସଗୋଲା, ଗୋଲାପଜାମୁ ଆଦି ଖିଆହେଲା ।

## ପ୍ୟାରିସ୍ ବୁଲା

ଲଣ୍ଡନ ରହଣୀର ପଞ୍ଚମଦିନ ସକାଳେ ଆମେ ଲଣ୍ଡନ ଛାଡ଼ି ପ୍ୟାରିସ ରୱାନା ହେଲୁ । ଲଣ୍ଡନରୁ ଗଲୁ ଲଣ୍ଡନ ଉଡ଼ାଜାହାଜ ଘାଟି, ସେଠାରୁ ଉଡ଼ାଜାହାଜରେ ପ୍ୟାରିସର ଓରଲି ଉଡ଼ାଜାହାଜ ଘାଟିକୁ ଗଲୁ । ଓରଲିରେ ପହଞ୍ଚିଲା ବେଳକୁ ଆମର ଛଅଗୋଟି ସୁଟକେଶ୍ ଭିତରୁ ଗୋଟିଏ ସୁଟ୍‌କେଶ ହଜିଗଲା । ସେ ସୁଟ୍‌କେଶଟି ଆଉ ଏକ ଉଡ଼ାଜାହାଜରେ ଅନ୍ୟ ଏକ ଉଡ଼ାଜାହାଜ ଘାଟିକୁ ଚାଲିଗଲା । ପାରିସରେ ପହଞ୍ଚି ମନ ବିଶେଷ ଭଲ ଲାଗିଲାନି । ଦୁଇ-ଦିନ ପରେ ସୁଟ୍‌କେଶଟି ମିଳିବାରୁ ମନଭଲ ଲାଗିଲା । ପ୍ୟାରିସରେ ଆମ ସହିତ ବୁଲିବାପାଇଁ ଆଉ କେହି ଭାରତୀୟ ନ ଥାନ୍ତି । ନିଜେ ନିଜେ ବୁଲିଲୁ । ହୋଟେଲତ ଆଗରୁ ରିଜର୍ଭ ହୋଇଥାଏ । ହୋଟେଲରେ ପହଞ୍ଚିଲା ବେଳକୁ ଦେଖିଲୁ ଯେ ହୋଟେଲବାଲା ଇଂରାଜୀ ବୁଝୁନାହିଁ । ଫରାସୀ ଭାଷାଛଡ଼ା ସେ ଆଉ କିଛି ବୁଝେ ନାହିଁ ।

ଡାକ୍ତର ମହାପାତ୍ରଙ୍କୁ ଫରାସୀଭାଷା ଅଜଣା । ବଡ ଅସୁବିଧା, ଯାହେଉ ସେହି ଅସୁବିଧା ଭିତରେ ପାରିସରେ କେତେଦିନ କଟାଇବାକୁ ପଡ଼ିବ ।

ହୋଟେଲରେ ଯଥାସ୍ଥ ଖିଆପିଆ ଶେଷ କରି ବାହାରି ପଡ଼ିଲୁ ଟେକ୍ସିଟିଏ କରି ପ୍ୟାରିସର ସୁବିଖ୍ୟାତ ଆଇଫେଲ ଟାୱାର ଦେଖି । ଆଇଫେଲ ଟାୱାରର ସୌନ୍ଦର୍ଯ୍ୟ ଅପରିସୀମ । ପାରିସର ସୁପ୍ରସିଦ୍ଧ ସାଇନ୍ ନଦୀ କୂଳରେ ଠିଆ ହୋଇଛି ପୃଥିବୀର ଏହି ସୁବିଖ୍ୟାତ ଲୌହସ୍ତମ୍ଭ । ଏହି ସ୍ତମ୍ଭର ଉପରକୁ ଯିବା ପାଇଁ ଲିଫ୍ଟ ଲାଗିଛି । ଆଇଫେଲ ଟାୱାର ଉପରୁ ପାରିସ ସହରର ସୌନ୍ଦର୍ଯ୍ୟ ଅତୁଳନୀୟ । ଯେ ଥରେ ଦେଖିଛି, ସେ କେବେ ଜୀବନରେ ସେ ସୌନ୍ଦର୍ଯ୍ୟକୁ ଭୁଲି ପାରିବନି । ପାରିସରେ ଦର୍ଶନୀୟ ସ୍ଥାନ ଅସଂଖ୍ୟ । ଗିର୍ଜ୍ଜା, ତୋରଣ, ପୋଲ ଆଦିରେ ପ୍ୟାରିସ ସହର ଭରି । ପ୍ରତ୍ୟେକଟିରେ ଚିତ୍ରକଳା ଓ ସ୍ଥାପତ୍ୟର ଅପୂର୍ବ ରୂପ । ପାରିସରେ ଥରେ ବୁଲି ଆସିଲେ, ସାଇନ୍ ନଦୀ କୂଳରେ ଘଣ୍ଟାଏ ବସି ଆସିଲେ, ଦୁଃଖଭରା ମନ ବି ଆନନ୍ଦରେ ପୂରି ଉଠେ । କଥାରେ ଅଛି କେହି ଯଦି ଆତ୍ମହତ୍ୟା କରିବାକୁ ସାଇନ୍ ନଦୀ କୂଳକୁ ଯାଏ, ତେବେ ସେ ପାରିସର ସୌନ୍ଦର୍ଯ୍ୟରେ ଏତେ ଆତ୍ମହରା ହୋଇ ପଡ଼େ ଯେ ଆତ୍ମହତ୍ୟା କରିବା କଥା ଭୁଲିଯାଏ ।

ପାରିସର ଅସଂଖ୍ୟ ଦର୍ଶନୀୟ ସ୍ଥାନ ଭିତରୁ ନେପୋଲିୟନ୍‌ଙ୍କ ସମାଧି ଓ ସ୍ମୃତି ମନ୍ଦିର ଅତି ଚମତ୍କାର । କାରୁକାର୍ଯ୍ୟର ଅସରନ୍ତି ସ୍ରୋତ ଛୁଟିଛି ଏହି ମନ୍ଦିରରେ । ପାରିସର ସୌନ୍ଦର୍ଯ୍ୟରେ ଆମେ ଏତେ ଆତ୍ମବିସ୍ମୃତ ହୋଇ ପଡ଼ିଥାଉଁ ଯେ ପାରିସରେ ଆମର ତିନି ଦିନର ରହଣି କ୍ଷଣଟିଏ ଭଳି ଲାଗିଲା ।

## ଜେନିଭା ସହର ଅଭିମୁଖେ

ପ୍ୟାରିସରେ ତିନିଦିନ ରହିସାରି ଆମେ ଚାଲିଲୁ ପୁଣି ସେହି ଉଡ଼ାଜାହାଜରେ ସୁଇଜରଲଣ୍ଡର ଏକ ସୁନ୍ଦରତମ ନଗରୀ ଜେନିଭା ସହର ଅଭିମୁଖେ । ପୃଥିବୀର ଏକ ସୁନ୍ଦର ସହର ଭାବରେ ଜେନିଭା ପୃଥିବୀ ପ୍ରସିଦ୍ଧ । କଥାରେ ଅଛି, ତୁମେ ଯଦି ଇଉରୋପ ଯାଇ ଜେନିଭା ସହର ଦେଖିନ, ତେବେ କିଛି ଦେଖିନ । ଏହିସବୁ କାରଣ ହେତୁ ଆମର ଇଉରୋପ ତାଲିକାରେ ଆମେ ଜେନିଭା ଭ୍ରମଣକୁ ନ ରଖି ରହି ପାରିଲୁ ନା ।

ଜେନିଭା ସହରରେ ଆମେ ଯେଉଁ ହୋଟେଲରେ ରହିଲୁ ସେହି ହୋଟେଲଟି ସୁପ୍ରସିଦ୍ଧ ଜେନିଭା ହ୍ରଦ କୂଳରେ । ଜେନିଭାରେ ଆମର ଦୁଇଦିନ ରହିବା ଠିକ୍ ହୋଇଥାଏ । ଜେନିଭା ହ୍ରଦ କୂଳକୁ ଗଲେ ମଣିଷ ସବୁ କିଛି ଭୁଲିଯାଏ । ହ୍ରଦ ଚାରିପାଖରେ ସେ ଯେଉଁ ସବୁ ପାର୍କ, ଉଦ୍ୟାନ, କଳ୍ପନାର ଅମରାବତୀକୁ ହାର ମନାଇ ଦେବ । ହ୍ରଦ ଚାରିପାଖରେ ବୁଲି ବୁଲି ହ୍ରଦ ଭିତରେ ବୁଲିବା ପାଇଁ ଏକ ଷ୍ଟିମରରେ ଜଳଯାତ୍ରା କଲୁ । ଜେନିଭା ହ୍ରଦରେ ବୁଲିବା ପାଇଁ ଏମିତି ଢେର ଷ୍ଟିମର ମିଳେ ।

ଜେନିଭାରେ ଆମକୁ ସବୁଠାରୁ ଭଲ ଲାଗିଲା ଜେନିଭାର ଅସଂଖ୍ୟ ଘଡ଼ି ଦୋକାନ । ଏଠାରୁ ଉତ୍କୃଷ୍ଟ ମହାର୍ଘ ଗୋଟିଏ ଘଡ଼ି କିଣିବା କଥା । ଓମେଗା, ରୋଲେକ୍ସ ଦୋକାନ ବୁଲିବୁଲି ଶେଷରେ ଗୋଟିଏ ଓମେଗ ଅଟୋମେଟିକ ଘଣ୍ଟା କିଣା ହେଲା । ମୋର ତ ଗୋଟାଏ ଘଣ୍ଟା ଆମେରିକାରେ କିଣା ହୋଇଥିଲା । ତେଣୁ ଆଜି ଗୋଟିଏ କିଣାଗଲା ମୋ ଝିଆରୀ ପାଇଁ ।

ଜେନାଭାର ଜାତିସଂଘ ଅଫିସ ବାସ୍ତବରେ ଦେଖିବା କଥା । ଏହା ନିଉୟର୍କର ଜାତିସଂଘ ଅଫିସ ଭଳି ବିରାଟ ନ ହେଲେ ହେଁ ଦେଖିବାକୁ ଖୁବ ଭଲ ଲାଗେ । ଜେନାଭା ହ୍ରଦ କୂଳରେ ଏଭଳି ବିରାଟ ପ୍ରାସାଦଗୁଡ଼ିକ ଠିଆ ହୋଇଛି । ସମ୍ମୁଖସ୍ଥ ସୁନ୍ଦର ଉଦ୍ୟାନ ଏହାର ଶୋଭା ମଣ୍ଡନ କରୁଛି ।

ଜେନାଭାରେ ଦୁଇଦିନ ରହିବା ପରେ, ସେଠୁଁ ବଦାୟ୍ ହେଲୁ ପଶ୍ଚିମ ଜର୍ମାନୀର ସୁପ୍ରସିଦ୍ଧ ନଗରୀ ମିଉନିକ୍ ଅଭିମୁଖେ । ପୁଣି ସେହି ଉଡ଼ାଜାହାଜରେ ଯାତ୍ରା । ଆମର ଇଉରୋପ ଭ୍ରମଣ ପୂର୍ବରୁ ଉଡ଼ାଜାହାଜରେ ହୋଇଥିବାରୁ ଏ ଏରୋଡ୍ରୋମ, ସେ ଏରୋଡ୍ରୋମ ହୋଇ ବ୍ୟତିବ୍ୟସ୍ତ ହୋଇ ପଡ଼ୁଥାଉଁ । ଇଉରୋପର ରେଳ ଗାଡ଼ିରେ ଚଢ଼ିବା ଅଭିଜ୍ଞତା ଆମର ଜୁଟିଲା ନାହିଁ । ଇଂଲଣ୍ଡର ରେଳଗାଡ଼ି ଯାହା ଚଢ଼ିଥିଲୁ ସେତିକି, ଆଉ ଅନ୍ୟ ରେଳଗାଡ଼ି ଚଢ଼ି ପାରିଲୁନି ।

## ମିଉନିକ୍ ପରିକ୍ରମା

ମିଉନିକ୍ ସହର ପଶ୍ଚିମ ଜର୍ମାନୀର ଏକ ପ୍ରସିଦ୍ଧ ସହର । ଏହା ଶିଳ୍ପ ସମୃଦ୍ଧ ବେଭେରିଆ ରାଜ୍ୟ ରାଜଧାନୀ । ସହରଟି ଶିଳ୍ପ କାରଖାନାରେ ପୂରି ଯାଇଛି । ମିଉନିକ୍‌ରେ ଆମେ ଯେଉଁ ହୋଟେଲରେ ରହିଲୁଁ, ସେ ହୋଟେଲଟି ଆମର ମନକୁ ପାଇଲା । ଏହା ଠିକ୍ ଆମେରିକାର ହୋଟେଲ ଢାଞ୍ଚାରେ ନୂଆ ହୋଇ ତିଆରି ହୋଇଥାଏ ।

ମିଉନିକ୍‌ରେ ଦେଖିବା ଜିନିଷ ଅସୁମାରି । ଆମର ଦୁଇଦିନ ରହଣି ଭିତରେ ସବୁ କିଛି ଦେଖିବାକୁ ପଡ଼ିବ । ମିଉନିକ୍‌ର ଶିଳ୍ପ ମିଉଜିୟମ୍ ପୃଥିବୀ ପ୍ରସିଦ୍ଧ । ଯଦିଓ ଆମେ ସବୁ ମିଉଜିୟମ୍ ଦେଖି

ଦେଖି ବିରକ୍ତ ହୋଇ ପଡ଼ିଥାଉଁ, ତେବେ ଏହି ମିଉଜିୟମଟି ଆମକୁ ଭଲ ଲାଗିଲା । ଏଥିରେ ଅସଂଖ୍ୟ ଶିକ୍ଷଣୀୟ ବିଷୟ ରହିଛି ।

ମିଉନିକ୍ ବିଶ୍ୱ ବିଦ୍ୟାଳୟ ପୃଥିବୀ ପ୍ରସିଦ୍ଧ । ତେଣୁ ସେଠାକୁ ନ ଯାଇ ଆମ ମିଉନିକ୍ ଭ୍ରମଣର ସମାପ୍ତ ହେଉଛି ବା କେଉଁଠି ? ବିଶ୍ୱବିଦ୍ୟାଳୟଟି ଖୁବ ଭଲ ଲାଗିଲା ଉକ୍ତର ମହାପାତ୍ରଙ୍କୁ । ପୃଥିବୀର ତ ବହୁ ବଡ଼ ବଡ଼ ବିଶ୍ୱବିଦ୍ୟାଳୟ ଆମେ ଦେଖି ସାରିଛୁ । ସେସବୁ ତୁଳନାରେ ଏହା ବିଶେଷ ଆକର୍ଷଣୀୟ ନ ହେଲେହେଁ ଏକ ପୁରୁଣା ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟ ଭାବରେ ଏହାର ଖ୍ୟାତି ଅପରିସୀମ । ମିଉନିକ୍‌ରେ ଦୁଇଦିନ ରହିଲା ପରେ ସେଠାରୁ ବିଦାୟ ନେଲୁ ଇଟାଲୀ ରାଜ୍ୟର ରୋମ ସହର ଉଦ୍ଦେଶ୍ୟରେ । ପୁଣି ସେହି ଉଡ଼ାଜାହାଜରେ ଯାତ୍ରା । ଏଥର ଉଡ଼ାଜାହାଜ ଯାତ୍ରାଟି ଖୁବ ଭଲ ଲାଗିଲା । କାରଣ ଏହା ଆଲ୍‌ପ୍‌ସ ପର୍ବତ ମାଳା ଉପର ଦେଇ ଉଡ଼ି ଗଲାବେଳେ ଆଲପସର ତୁଷାର ମଣ୍ଡିତ ଶିଖରଚୂଡ଼ା ମୋତେ ଖୁବ ଭଲ ଲାଗୁଥିଲା । ଆଲପସର ତୁଷାର ମଣ୍ଡିତ ଶୁଭ୍ର ଶିଖର ଉପରେ ଗଲାବେଳେ ସ୍ୱପ୍ନପୁରୀରେ ପହଞ୍ଚିଲାଭଳି ମୋତେ ଲାଗୁଥାଏ ।

## ରୋମ ସହର ବୁଲା

ରୋମ ହେଉଛି ଇଟାଲୀ ରାଜ୍ୟର ରାଜଧାନୀ, ଇଉରୋପର ତଥା ପୃଥିବୀର ଏକ ପୁରାତନ ସହର । ଏହାର ଇତିହାସ ହଜାର ହଜାର ବର୍ଷଧରି ରହି ଆସିଛି । ହଜାର ହଜାର ବର୍ଷର ବହୁ ପୁରୁଣା ପ୍ରାସାଦ, ଗିର୍ଜା, ମନ୍ଦିର ତୋରଣରେ ସହରଟି ଭରି-ଯାଇଛି । ରୋମ୍‌ରେ ଆମର ତିନିଦିନ ରହିବା କଥା । ରୋମରେ ଏତେ ଜିନିଷ ଦେଖିବାର ଅଛି ଯେ ମାସ ମାସ ଧରି ଦେଖିଲେ

ମଧ୍ୟ ସରିବନି । ତେଣୁ ତିନିଦିନ ଭିତରେ କ'ଣ ବା ଆମେ ଦେଖିବୁଁ । ହେଲେ ସବୁ ବଡ଼ ବଡ଼ ଜିନିଷ ଦେଖିନେବା କଥା । ପ୍ରଥମଦିନ ଆମେ ଟେକ୍ସିକରି ହୋଟେଲରୁ ବାହାରିଲୁ ରୋମ୍ର ସୁପ୍ରସିଦ୍ଧ କଲେସିୟମ ଅଭିମୁଖେ । ଏହି କଲେସିୟମ୍‌ଟି ଦୁଇହଜାର ବର୍ଷରୁ ଅଧିକ ପୁରୁଣା । କି ବିରାଟ ଏହି ପ୍ରାସାଦଟି, ଭଗ୍ନାବସ୍ଥାରେ ପଡ଼ିରହିଛି । ଏହାର ବିରାଟତା ଦେଖିଲେ ଦୁଇହଜାର ବର୍ଷ ତଳର ରୋମ୍ ଅଧିବାସୀଙ୍କ ସ୍ଥାପତ୍ୟ କଳାର ପ୍ରଶଂସା ନ କରି ରହି ହୁଏନି ।

ରୋମ୍‌ରେ ରହିବାର ଦ୍ୱିତୀୟଦିନ ଆମେ ଗଲୁଁ ଭାଟିକାନ୍ ଦେଖି । ଭାଟିକନ୍ ସହର ହେଉଛି କେଥେଲିକ୍ ସଂପ୍ରଦାୟର ଏକ ପ୍ରଧାନ ତୀର୍ଥ କ୍ଷେତ୍ର । ଖ୍ରୀଷ୍ଟଧର୍ମର କେଥେଲିକ୍ ସଂପ୍ରଦାୟର ଶ୍ରେଷ୍ଠ ଗୁରୁ ପୋପ୍ ଏଠି ଅବସ୍ଥାନ କରନ୍ତି । ବଡ଼ ବିଚିତ୍ର ଏହି ସହରଟି । ଯଦିଓ ଏହି ସହରଟି ରୋମ୍ ସହର ଭିତରେ, ଏହା ଏକ ଅଲଗା ରାଜ୍ୟ ଭାବରେ ପରିଗଣିତ ହୁଏ । ଏହି ସହର ଉପରେ ଇଟାଲୀ ସରକାରଙ୍କର କୌଣସି କର୍ତ୍ତୃତ୍ୱ ନାହିଁ । ଏହି ସହରଟିର ମାଲିକ ହେଉଛନ୍ତି ପୋପ୍ ନିଜେ । ଏହି ସହରଟିରେ ବହୁତ କିଛି ଦେଖିବାର ଅଛି । ପୃଥିବୀର ବୃହତ୍ତମ ପ୍ରାସାଦ ଭିତରୁ ଗୋଟିଏ ହେଉଛି ପୋପ୍‌ଙ୍କ ପ୍ରାସାଦ । ଭାଟିକାନ୍‌ର ଦ୍ୱାର ଦେଶରେ ରହିଛି ପୃଥିବୀର ବୃହତ୍ତମ ସେଣ୍ଟ ପିଟରସ୍ ଗିର୍ଜ୍ଜା । ଗିର୍ଜ୍ଜା ଭିତରର ସ୍ଥାପତ୍ୟକଳା ଓ ସୌନ୍ଦର୍ଯ୍ୟ ଭାଷାରେ ବର୍ଣ୍ଣନା କରିହେବ ନି । ଭାଟିକାନ୍ ପ୍ରାସାଦରୁ ଲାଗି ରହିଛି ପୃଥିବୀର ଏକ ବୃହତ୍ତମ ମିଉଜିୟମ ଭାଟିକାନ୍ ମିଉଜିୟମ୍ । ଭାଟିକନ୍ ମିଉଜିୟମ୍ ଭିତରକୁ ପଶିଯାଇ ଏହାର ବିରାଟତାରେ ଏକେ ସ୍ତବ୍ଧ ହୋଇପଡ଼ିଲି ଯେ ମୋହାବି ଏହି ଭୋକାସାକ

ମିଉଜିୟମ ଦେଖିବା ସମ୍ଭବପର ନୁହେଁ ଭାବି ଅଟକି ଗଲି । ସାମାନ୍ୟ କିଛି ଦେଖିସାରି ଗୋଟାଏ ସ୍ଥାନରେ ବସି ରହିଲି । ଡାକ୍ତର ମହାପାତ୍ର, ପୁଅ ଓ ଝିଅ ଏମାନେ ବୁଲି ବୁଲି ମିଉଜିୟମର ସବୁ ଅଂଶଯାକ ଦେଖିଲେ ।

ରୋମ୍‌ରେ ଏତେ ଦେଖିବା ଜିନିଷ ଅଛି ଯେ ସେକଥା କହି ହେବନି । କେତେ ବା ଦେଖିବୁ, ସକାଳୁ ରାତି ପର୍ଯ୍ୟନ୍ତ ଏଠି ଦେଖା ଚାଲିଥାଏ । ଦେଖି ଦେଖି ହାଲିଆ ହୋଇପଡ଼ୁଥାଉ ତଥାପି ମନ ପୂରୁ ନ ଥାଏ ।

## ଭାରତ ପ୍ରତ୍ୟାବର୍ତ୍ତନ

ରୋମ୍‌ରେ ତିନିଦିନ ଅତିବାହିତ କରିସାରିବା ପରେ ଆମେ ଇଉରୋପ ଛାଡ଼ିଲୁଁ; ଭାରତ ଅଭିମୁଖେ । ଆଲିଟାଲିଆ କମ୍ପାନୀର ଏକ ବୋଇଂ ଜେଟ୍ ଜାହାଜରେ ରୋମ ଆନ୍ତର୍ଜାତିକ ଏୟାର ପୋର୍ଟ ଛାଡ଼ିଲୁଁ ବମ୍ବେର ସାନ୍ତାକ୍ରୁଜ୍ ଉଡ଼ାଜାହାଜ ଘାଟି ଅଭିମୁଖେ । ଠିକ୍ ସନ୍ଧ୍ୟାବେଳେ ରୋମ୍ ଛାଡ଼ିଲୁଁ, ତହିଁ ପରଦିନ ସକାଳେ ବମ୍ବେରେ ପହଞ୍ଚିଲୁ ।

ବମ୍ବେରେ ପୁଣି ରହିଲୁ ଚାରିଦିନ । ଆମେ କେବେ ବମ୍ବେ ଦେଖି ନ ଥିଲୁ । ତେଣୁ ଚାରିଦିନ ଯାଏ ବମ୍ବେସହର ବୁଲିନେବା କଥା । ଆମ ଦେଶର ଏହା ଏକ ସୁନ୍ଦର ସହର । କିନ୍ତୁ ଦୁଃଖର କଥା ଆମେରିକା ଓ ଇଉରୋପର ବଡ଼ ବଡ଼ ସହର ବୁଲିସାରିବା ଠିକ୍ ପରେ ପରେ ବମ୍ବେ ମୋଟେ ଭଲ ଲାଗିଲା ନି । ବମ୍ବେ ସହରଟା ଅପରିଷ୍କାର, ପୁରୁଣାକାଳିଆ, ଅନୁନ୍ନତ ସହରଭଳି ଲାଗିଲା । ତଥାପି ବମ୍ବେର ବହୁତଗୁଡ଼ିଏ ଦର୍ଶନୀୟସ୍ଥାନ ଦେଖି ଟ୍ରେନଯୋଗେ ଆମ ଘର ଅଭିମୁଖେ ଫେରିଲୁ ।

ଯେଉଁଦିନ ଆମେ ଭଦ୍ରକ ଷ୍ଟେସନରେ ପହଞ୍ଚିଲୁ, ଆମକୁ ସ୍ୱାଗତ ଜଣାଇବାପାଇଁ ବହୁ ଲୋକ ଷ୍ଟେସନକୁ ଆସିଥାନ୍ତି । ଦୁଇବର୍ଷରୁ ଅଧିକ କାଳ ଦେଶବାହାରେ ଥିବାରୁ ଆତ୍ମୀୟ ସ୍ୱଜନ ମାନଙ୍କୁ ଦେଖି ଭାରି ଖୁସି ଲାଗିଲା । ହସଖୁସିରେ ଘରକୁ ଫେରିଲୁ, ପାଶ୍ଚାତ୍ୟ ଭ୍ରମଣର ସ୍ମୃତି ଟିକକକୁ ମନରେ ଧରି ।

—*—

ମୁଦ୍ରାକର—ଶ୍ରୀ ବସନ୍ତକୁମାର ଦାଶ, ଶ୍ରୀ ସତ୍ୟନାରାୟଣ ପ୍ରେସ,
ଡଗରପଡ଼ା, କଟକ-୨